# ଆଦିବାସୀ ଜୀବନ

## ସଂସ୍କୃତି ଓ ପରମ୍ପରା

ଭଗୀରଥ ନେପାକ



ଭଗୀରଥ ପ୍ରକାଶନ

ଭୁବନେଶ୍ବର

# ଆଦିବାସୀ ଜୀବନ

## ସଂସ୍କୃତି ଓ ପରଂପରା

ଭଗୀରଥି ନେପାକ

ପ୍ରକାଶକ

ଭଗୀରଥ ପ୍ରକାଶନ

* ଆଦିବାସୀ ଜୀବନ / ସଂସ୍କୃତି ଓ ପରଂପରା

* ଲେଖକ : ଭାଗୀରଥି ନେପାକ


* ପ୍ରକାଶିକା : ଶ୍ରୀମତୀ ଅନୁସୂୟା ନେପାକ
ଭଗୀରଥ ପ୍ରକାଶନ, ୟୁନିଟ୍-୪ ଭୁବନେଶ୍ୱର-୧

* ମୁଦ୍ରଣ : ଶବରଣୀ ପ୍ରକାଶନୀ
ଲୁଇସ୍ ରୋଡ୍, ଭୁବନେଶ୍ୱର-୨

* ଅଙ୍ଗସଜ୍ଜା : ଶ୍ରୀ ଜଗନ୍ନାଥ କାନୁନ୍‌ଗୋ (ସାହିତ୍ୟ ଏକାଡେମୀ)

* ପ୍ରଚ୍ଛଦ ଆଲେଖ ଚିତ୍ର— ଗଂଜାମର ଚଢ଼େୟା ନୃତ୍ୟ

ପ୍ରଥମ ମୁଦ୍ରଣ : ୧୯୭୭

* ମୂଲ୍ୟ : ପାଞ୍ଚ ଟଙ୍କା ମାତ୍ର
ବୋର୍ଡ ବଂଧେଇ ଦୁଇଟଙ୍କା ସ୍ୱତନ୍ତ୍ର

* ପରିବେଷକ : ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦ ବିହାରୀ, କଟକ-୨



---

* Adibasi Jiban
Sanskruti O' Parampara
* Writer : Bhagirathi Nepak


* Published by—Bhagiratha Prakashana
Qr. no. H-58, Unit-4, Bhubaneswar-1

# ବିଷୟସୂଚୀ : ଆଦିବାସୀ ଜୀବନ/ସଂସ୍କୃତି ଓ ପରଂପରା

## ପ୍ରଥମ ଭାଗ


* ଭୂମିକା (୬) ଆଦିବାସୀମାନଙ୍କ ଅବସ୍ଥା : ସ୍ୱାଧୀନତା ପ୍ରାପ୍ତି ପୂର୍ବେ ଓ ପରେ (୭) ଜନଗଣନା ହିସାବରେ ଆଦିବାସୀ (୧୯୬୧ ଓ ୧୯୭୧ର ହିସାବ ଫର୍ଦ୍ଦ) (୮) ଓଡ଼ିଶାର ଆଦିବାସୀ ତାଲିକା (୧୧) ଆଦିବାସୀ ଅର୍ଥ (୧୨)
* ଆଦିବାସୀ ନୃତ୍ୟ ସଙ୍ଗୀତ (୧୩) ଆଦିବାସୀ ଭାଷା (୧୬)
* ସାମ୍ୟ :ବୈଷମ୍ୟ ପ୍ରସଙ୍ଗ (୧୮) ଆଦିମ ଆଦିବାସୀ ସଂଖ୍ୟା ନିର୍ଣ୍ଣୟ (୨୦)
* କେତେକ ଐତିହାସିକ ତଥ୍ୟ— ଭାରତୀୟ ସାହିତ୍ୟ ଓ ଶିଳାଲେଖରେ ଆଦିବାସୀ (୨୨) ମଧ୍ୟଯୁଗରେ ଆଦିବାସୀମାନଙ୍କ ପ୍ରତି ଦୃଷ୍ଟିକୋଣ (୨୪) ସାନ୍ତାଳ ବିଦ୍ରୋହ : ୧୮୫୫ (୨୬) ସର୍ଦ୍ଦାର ବିଦ୍ରୋହ : ୧୮୮୭- ବିର୍ସା ବିଦ୍ରୋହ : ୧୮୯୫-କୋୟା ବିଦ୍ରୋହ ; ୧୮୭୨ (୨୭)
* ସ୍ୱାଧୀନତା ହାସଲ : ପୂର୍ବ ଓ ପରବର୍ତ୍ତୀ ଅବସ୍ଥା ଓ ସଂବିଧାନ (୨୮)
* କ୍ରମ ଅପସୃଷ୍ଟି ସଂସ୍କୃତି
  ସଂସ୍କୃତି (୩୧)-ଆଦିବାସୀ ସଂସ୍କୃତି (୩୨)-ଓଡ଼ିଆ ସାହିତ୍ୟରେ ନୂତନ ଦିଗନ୍ତ (୩୩)
* ଆଦିବାସୀ ସଂପ୍ରଦାୟର କେତେକ ପର୍ବ ପର୍ବାଣୀ
ନୂଆଖାଇ (୩୬)-କାଦୋଯାତ୍ରା ଓ ମେରୁଯାତ୍ରା (୩୯)- ଗୁଣ୍ଡିଝିଅ(୩୯) -ଦଏଲ-ପର୍ବ (୪୦) - ହରିଲ ପରବ୍ (୪୨)- ଚଇତ୍ ପରବ (୪୨)-ଗୋଁଡର ପର୍ବ (୪୪)


## ଦ୍ୱିତୀୟ ଭାଗ ସହାବସ୍ଥାନ ଚକ୍ର


* ଆର୍ଯ୍ୟ ଓ ଆଦିବାସୀ ସଂସ୍କୃତିର ସମ୍ମିଶ୍ରଣ (୪୬)-
* ଆର୍ଯ୍ୟ- ଅନାର୍ଯ୍ୟ ସଂସ୍କୃତିର ସହାବସ୍ଥାନ (୪୮) ଶ୍ରୀ ଜଗନ୍ନାଥ ମନ୍ଦିର (୫୦) ଶ୍ରୀ ଲିଙ୍ଗରାଜ ମନ୍ଦିର (୫୧) ବେଦବ୍ୟାସ (୫୩) କପିଳେଶ୍ୱର ମନ୍ଦିର ଓ ତରଦାଇ ମନ୍ଦିର : ତରଦା (୫୪) ନୃସିଂହନାଥ (୫୫) ହରିଶଙ୍କର (୫୬) ରାଣୀପୁର ଝରିଆଲ (୫୭) ସମ୍ବଲେଶ୍ୱରୀ (୫୮)

## ତୃତୀୟ ଭାଗ : ଆଲୋକ ଚିତ୍ରମାଳା

* କୋରାପୁଟ ଓ କଳାହାଣ୍ଡିର ଗଦବା ନୃତ୍ୟ * କୋରାପୁଟର ପରଜା ନୃତ୍ୟ * କଳାହାଣ୍ଡି ଓ ବଲାଙ୍ଗୀରର ଚଇତ୍ରପର୍ବ ନୃତ୍ୟ * କଳାହାଣ୍ଡିର ଘୁମୁରା ନୃତ୍ୟ କୋରାପୁଟ ଓ କେଉଁଝରର ଜୁଆଙ୍ଗ ନୃତ୍ୟ * କୋରାପୁଟର କୋୟା ନୃତ୍ୟ * ଆଦିବାସୀ ତରୁଣୀଦ୍ୱୟ * ପଶ୍ଚିମ ଓଡ଼ିଶାର ଦଣ୍ଡ ନୃତ୍ୟ * ନୃତ୍ୟରତା ଆଦିବାସୀ ତରୁଣୀ * ଗଞ୍ଜାମର ଚଢ଼େୟା ନୃତ୍ୟ * ବନାଞ୍ଚଳ ଆଦିବାସୀ ପଲ୍ଲୀରେ ନୃତ୍ୟ ମୁଖର ତରୁଣୀଦଳ * ଗଞ୍ଜାମର ରଣପା ନୃତ୍ୟ * କଳାହାଣ୍ଡିର ପ୍ରଖ୍ୟାତ ଘୁମୁରା ଦଳ ଓ ମାନ୍ୟବର ଶ୍ରୀ ବି.ଡି. ଜଟ୍ଟି

## ସହାୟକ ଗ୍ରନ୍ଥସୂଚୀ


* Adibasi : 1963-64 No.3, 1968-69 Vol x; 1969-70 Vol x1
* Tribal Language of Orrisa : Dr. A Aiyappan
* Fading out lines in Tribal culture : Shri Gopinath Mohanty
* ସମ୍ବଲପୁର ଇତିହାସ : ଶ୍ରୀ ଶିବପ୍ରସାଦ ଦାଶ
* ଓଡ଼ିଆ ସାହିତ୍ୟର ଇତିହାସ—ଡକ୍ଟର ମାୟାଧର ମାନସିଂହ
* ସମ୍ବଲପୁରୀ ପଲ୍ଲୀ ସଂଗୀତ—ଶ୍ରୀମୁରଲୀ ପ୍ରସାଦ ମିଶ୍ର
* ବଲାଙ୍ଗୀର ଜିଲ୍ଲାର ଲୋକନୃତ୍ୟ ଓ ଗୀତ : ଶ୍ରୀନରସିଂହ ପ୍ରସାଦ ଗୁରୁ
* ସାହିତ୍ୟର ମୂଲ୍ୟବୋଧ : ପଦ୍ମଶ୍ରୀ ସଚ୍ଚିଦା ନନ୍ଦ ରାଉତରାୟ




# ଭୂମିକା

: ଜନନାୟକ ଜବାହରଲାଲଙ୍କ ମତାମତ ଉପସ୍ଥାପନ :

ସ୍ୱାଧୀନ ଭାରତରେ ଆଦିବାସୀ ସମସ୍ୟା ଓ ତାହାର ନିରାକରଣ ପାଇଁ ବିଭିନ୍ନ ନୀତି ଅନୁସୃତ ହେଉଛି ।

ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ତଥା ସ୍ୱାଧୀନତାର ସାରଥୀ ଜନନାୟକ ଜବାହରଲାଲ ନେହେରୁ କହିଥିଲେ, "ଆଦିବାସୀମାନେ ଆମର ଆତ୍ମୀୟ । ସେମାନଙ୍କ ପାଇଁ କେତେକ ବିଦ୍ୟାଳୟ ଓ ଚିକିତ୍ସାଳୟ ଖୋଲିଦେଲେ ଆମର କର୍ତ୍ତବ୍ୟ ଶେଷ ହୋଇଗଲା ଭାବିବା ଉଚିତ ହେବନାହିଁ । ×× ସେହି ଅଧିବାସୀମାନଙ୍କ ସହିତ ଏକତାର ଭାବଧାରାକୁ ବିକଶିତ କରିବା ଏବଂ ଏକ ଉଲ୍ଲେଖଯୋଗ୍ୟ କୃଷ୍ଟିମଣ୍ଡା ସୃଷ୍ଟି କରିବା ଆମର କାମ୍ୟ । ଏହା କେବଳ ବୈଷୟିକ ନୁହେଁ, ବରଂ ଅଧିକ ପରିମାଣରେ ମନସ୍ତାତ୍ତ୍ୱିକ କାର୍ଯ୍ୟକ୍ରମ ଅଟେ ।"

ଆଦିବାସୀମାନଙ୍କର ବିକାଶ ନିମନ୍ତେ ଶ୍ରୀ ନେହେରୁ ନିମ୍ନଲିଖିତ ପାଞ୍ଚୋଟି ନୀତିକୁ ସମର୍ଥନ କରୁଥିଲେ ।

(୧) ଆଦିବାସୀମାନେ ସେମାନଙ୍କ ନିଜ ପ୍ରତିଭା ଅନୁଯାୟୀ ବିକଶିତ ହେବା ଆବଶ୍ୟକ । ସେମାନଙ୍କ ଉପରେ ଲଦି ଦେବା ଭଳି କିଛି ଗୋଟିଏ ନିୟମ ଧାର୍ଯ୍ୟ କରିବା ଅନୁଚିତ ।

ସବୁକିଛି ବିଷୟରେ ସେମାନଙ୍କ ପାରମ୍ପରିକ କଳା ଓ ସଂସ୍କୃତିକୁ ଉତ୍ସାହିତ କରିବା ଆବଶ୍ୟକ ।

(୨) ଭୂମି ଓ ଜଙ୍ଗଲ ଉପରେ ସେମାନଙ୍କ ଦାବୀକୁ ସମ୍ମାନ ଦେବା ଉଚିତ ।

(୩) ଶାସନ ତଥା ବିକାଶ କ୍ଷେତ୍ରରେ ସେମାନଙ୍କ ନିଜ ଲୋକମାନଙ୍କ ଦଳ ଗଠନ କରି ସେମାନଙ୍କୁ ତାଲିମ ଦେବା ନିମନ୍ତେ ଚେଷ୍ଟା କରିବା ଉଚିତ । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ବେଶୀ ବାହାର ଲୋକଙ୍କୁ ପୁରାଇବା ଉଚିତ ନୁହେଁ ।

(୪) ଏହି ଆଦିବାସୀ ଅଞ୍ଚଳମାନଙ୍କୁ ଅତିଶୀଘ୍ର ଶାସନ ବଳରେ ବା ହଠାତ୍ ବହୁ ସଂଖ୍ୟକ ଯୋଜନା ଆରମ୍ଭ କରି ଚମକପ୍ରଦ କରିଦେବା ଉଚିତ ନୁହେଁ ।

ସେମାନଙ୍କ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ପ୍ରତି ଅବହେଳା ପ୍ରଦର୍ଶନ ନ କରି ସେମାନଙ୍କ ଭାବରେ କାନ୍ଧ ମିଳାଇ କାମ କରିବା ଉଚିତ ।

(୫) ପରିସଂଖ୍ୟାନ ପଦ୍ଧତିରେ ଅର୍ଥାତ୍ ବ୍ୟୟିତ ଅର୍ଥର ପରିମାଣକୁ ହିସାବକୁ ନ ନେଇ, ସେମାନଙ୍କ ବିକଶିତ ଜୀବନର ଫଳାଫଳ ଉପରେ ଦୃଷ୍ଟି ଦେଇ, ବିକାଶ ଯୋଜନାକୁ ବିବେଚନା କରିବା ଉଚିତ ।

## —ଆଦିବାସୀମାନଙ୍କ ଅବସ୍ଥା : ସ୍ୱାଧୀନତା ପ୍ରାପ୍ତି ପୂର୍ବେ ଓ ପରେ—

ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ଆଦିବାସୀମାନେ ଦୟନୀୟ ଜୀବନ ଯାପନ କରୁଥିଲେ । ସେମାନଙ୍କ ସମାଜ ଓ ସଂସ୍କୃତି ବିଷୟରେ କୌଣସି ଆଲୋଚନା କରାଯାଉ ନ ଥିଲା । ସେମାନେ ନିରକ୍ଷର, ଅବହେଳିତ ଓ ଅଭାବଗ୍ରସ୍ତ ଜୀବନ ଯାପନ କରୁଥିଲେ । ଜମିଦାର, ସାହୁକାର ଇତ୍ୟାଦିଙ୍କ ଠାରୁ ଆରମ୍ଭ କରି ଶାସନ କଳର ବିଭିନ୍ନ ପଦରେ ଅଧିଷ୍ଠିତ ଥିବା କର୍ମଚାରୀମାନେ ସେମାନଙ୍କୁ ଶୋଷଣ କରିବାରେ ଲାଗି ପଡ଼ିଥିଲେ ।

ବସ୍ତୁତଃ ଆଦିବାସୀମାନେ ପ୍ରାକ୍ ସ୍ୱାଧୀନତା କାଳରେ ଉପାନ୍ତୀୟ ଭାବରେ କାଳ କଟାଉଥିଲେ ।

ତଥାପି ସେହି ସମସ୍ୟା ବହୁଳ ପରିସ୍ଥିତି ମଧ୍ୟରେ ନିଜର ସାଂସ୍କୃତିକ ଜୀବନକୁ ସେମାନେ ବଳି ନ ଦେଇ ପାରମ୍ପରିକ ଧାରାରେ ପ୍ରାକୃତିକ ପରିବେଶକୁ ଅକ୍ଷୁର୍ଣ୍ଣ ରଖିଥିଲେ । ତେଣୁ ସେମାନଙ୍କ ଧାରାବାହିକ ଚଳଣୀ, ଚିନ୍ତାଧାରା, ବିଶ୍ୱାସ ଓ ଚେତନା ଅବ୍ୟାହତ ଥିଲା ।

ସ୍ୱାଧୀନ ଭାରତରେ ଆଦିବାସୀମାନଙ୍କ ବିଭିନ୍ନ ସମସ୍ୟାର ଅନୁଧ୍ୟାନ କରାଯାଇ ତାହାର ସୁଷ୍ଠୁ ନିରାକରଣ ନିମନ୍ତେ ଯୋଜନାବଦ୍ଧ ନୀତି ପ୍ରବର୍ତ୍ତିତ ହେଉଛି । ଯୋଜନାର ସଫଳ ରୂପାୟନ ପରେ ଆଦିବାସୀମାନଙ୍କ ଅବସ୍ଥାରେ ପରିବର୍ତ୍ତନ ଘଟିବ ବୋଲି ଆଶା କରାଯାଏ ।

ବ୍ଲକ, ଜିଲ୍ଲା ଓ ରାଜ୍ୟସ୍ତରରେ ଅନୁନ୍ନତ ଶ୍ରେଣୀର ଆଦିବାସୀମାନଙ୍କ ଉନ୍ନତି ବିଧାନ ପାଇଁ ବର୍ତ୍ତମାନ ସରକାରୀ ପ୍ରଚେଷ୍ଟା ଆଗେଇ ଚାଲିଛି । ଆଦିବାସୀ ଅଧ୍ୟୁଷିତ

ଗାଁ ଗହଳରେ ଆଶ୍ରମ ସ୍କୁଲମାନ ଖୋଲା ଯାଇଛି । ଆଦିବାସୀ ଅଞ୍ଚଳରେ ରାସ୍ତାଘାଟ ନିର୍ମାଣ ଯୋଜନା କାର୍ଯ୍ୟକାରୀ ହେଉଛି । ଆଦିବାସୀ ବାଳକ ବାଳିକାମାନଙ୍କୁ ବୃତ୍ତି ଦିଆଯାଇ ସେମାନଙ୍କର ଉଚ୍ଚ ଶିକ୍ଷାର ବ୍ୟବସ୍ଥା କରାଯାଉଛି । ସରକାରୀ, ଅର୍ଦ୍ଧ ସରକାରୀ ଓ ବେସରକାରୀ ପ୍ରତ୍ୟେକ ସଂସ୍ଥାରେ ଅନୁନ୍ନତ ଶ୍ରେଣୀର ଆଦିବାସୀମାନେ ଯେପରି ସ୍ଥାନ ପାଇପାରିବେ, ନିୟମ କାନୁନ ଜରିଆରେ ତାର ବ୍ୟବସ୍ଥା ହେଉଛି ।

ଏବେ ଅଶିକ୍ଷିତ ଆଦିବାସୀମାନେ ପୋଡୁ ଚାଷ ପରି ଏକ କ୍ଷତିକାରକ ଧନ୍ଦାରୁ ଯେପରି ନିବୃତ୍ତ ହେବେ, ସେଥିପାଇଁ ସେମାନଙ୍କୁ ଚାଷ ଜମି, ଗାଈ ବଳଦ, ଛେଳି ଆଦି ଯୋଗାଇ ଦିଆଯାଉଛି ।

ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ସରକାରଙ୍କ ପୃଷ୍ଠପୋଷକତାରେ ସମବାୟ ସମିତି-ମାନ ସ୍ଥାପନ କରାଯାଇ, ସୁବିଧା ଦରରେ ଆଦିବାସୀମାନଙ୍କ ପାଖରୁ କୃଷିଜାତ ଓ ବନ୍ୟଜାତ ଜିନିଷ ସଂଗ୍ରହ କରାଯାଇ ତାକୁ ସହର ବଜାରରେ ବିକ୍ରି କରିବାର ବ୍ୟବସ୍ଥା ଅବଲମ୍ବନ କରାଯାଉଛି । ପୁଣି ନିଷ୍ଠୁର ସାହୁକାରମାନଙ୍କ ଶୋଷଣରୁ ଏମାନଙ୍କୁ ମୁକ୍ତ କରିବା ନିମନ୍ତେ ସୁବିଧାରେ ଋଣ ଯୋଗାଇ ଦିଆଯାଇ ସହଜ କିସ୍ତିରେ ଅସୁଲ କରିବା ନୀତି କାର୍ଯ୍ୟକାରୀ ହେଉଛି ।

ଆଶା କରାଯାଏ, ଏ ଉଦ୍ୟମ ଅବ୍ୟାହତ ରହିଲେ ଓ କ୍ଷେତ୍ର କର୍ମୀମାନେ ନିଃସ୍ୱାର୍ଥ-ପର ଭାବରେ ଏହି ଉନ୍ନତିମୂଳକ ଯୋଜନାକୁ କାର୍ଯ୍ୟକାରୀ କଲେ, ଆଦିବାସୀ-ମାନଙ୍କର ତଥା ଓଡ଼ିଶାର ଭାଗ୍ୟ ବଦଳି ଯିବ ।

କେବଳ ଯେ ପ୍ରାଦେଶିକ ସରକାର ଜରିଆରେ ଏ ସବୁ ଯୋଜନାକୁ ଅଗ୍ରାଧିକାର ଦିଆଯାଉଛି ତାହାନୁହେଁ, କେନ୍ଦ୍ର ସରକାର ମଧ୍ୟ ଏଥିପ୍ରତି ସୁନଜର ରଖି ବହୁତ ସାହାଯ୍ୟ ସହଯୋଗ ପ୍ରଦାନ କରୁଛନ୍ତି ।

## —ଜନଗଣନା ହିସାବରେ ଆଦିବାସୀ—

(୧୯୬୧ ଓ ୧୯୭୧ର ହିସାବ ଅନୁସାରେ)

ଓଡ଼ିଶା ଏକ ଆଦିବାସୀ ବହୁଳ ରାଜ୍ୟ । ଭାରତବର୍ଷରେ କେବଳ ନାଗା ରାଜ୍ୟକୁ ଛାଡ଼ିଦେଲେ, ଆଦିବାସୀ ବହୁଳତାରେ ଓଡ଼ିଶା ଦ୍ୱିତୀୟ ସ୍ଥାନ ଅଧିକାର କରିଛି ।

୧୯୬୧ର ଜନଗଣନା ଅନୁଯାୟୀ ଓଡ଼ିଶାରେ ଆଦିବାସୀମାନଙ୍କ ସଂଖ୍ୟା ଥିଲା ୪୨, ୨୩, ୭୫୭ । ଏହା ସମଗ୍ର ଜନସଂଖ୍ୟାର ୨୪:୭୨ ଭାଗ ଥିଲା । ୧୯୭୧ ମସିହାରେ

ସମାପ୍ତ ହୋଇଥିବା ଜନଗଣନାର ହିସାବ ଅନୁଯାୟୀ ଏମାନଙ୍କ ସଂଖ୍ୟା ହେଲା, ୫୦, ୭୧, ୯୩୭ । ୧୯୫୧ ଓ ୧୯୬୧ର ଜନଗଣନା ଅନୁଯାୟୀ ସମଗ୍ର ଭାରତ-ବର୍ଷରେ ଆଦିବାସୀମାନଙ୍କ ସଂଖ୍ୟା ଥିଲା ଯଥାକ୍ରମେ ୧୯, ୧୪୭, ୨୫୪ ଓ ୨୨, ୫୧୧, ୮୫୪ ।

ଭାରତର ଆଦିବାସୀ ବହୁଳ ରାଜ୍ୟମାନଙ୍କ ମଧ୍ୟରେ ଓଡ଼ିଶା ଅନ୍ୟତମ । ୧୯୭୧ ଜନଗଣନା ଅନୁସାରେ ଓଡ଼ିଶାର ମୋଟ ଜନ ସଂଖ୍ୟା ୨, ୧୯, ୪୪, ୬୧୫ ମଧ୍ୟରୁ ଆଦିବାସୀମାନଙ୍କ ସଂଖ୍ୟା ୫୦,୭୧,୯୩୭ । ଏଥିରୁ ଜଣାପିବ ଯେ ଓଡ଼ିଶାର ମୋଟ ଜନସଂଖ୍ୟା ତୁଳନାରେ ଶତକଡ଼ା ୨୩ ହାରରେ ଆଦିବାସୀମାନେ ବସବାସ କରିଥାନ୍ତି । ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଓଡ଼ିଶାରେ ଆଦିବାସୀମାନଙ୍କର ଶତକଡ଼ା ହାର ଅଧିକ ।

ଏହା ସଙ୍ଗରେ ୧୯୭୧ ମସିହା ଓଡ଼ିଶାର ଆଦିବାସୀ ଜନଗଣନା ହିସାବ ସର୍ବ ପରିବେଷିତ ହେଲା ।

ଏଥିରୁ ସ୍ପଷ୍ଟ ବୁଝାପିବ ଯେ ଭାରତବର୍ଷରେ ତଥା ଓଡ଼ିଶା ପ୍ରଦେଶରେ ଆଦିବାସୀ-ମାନଙ୍କ ସଂଖ୍ୟା କ୍ରମ ବର୍ଦ୍ଧମାନ ।

ଆଦିବାସୀମାନଙ୍କୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରିହେଇ ପାରିବ । ପ୍ରଥମ ଶ୍ରେଣୀର ଆଦିବାସୀମାନେ ଏବେ ମଧ୍ୟ ସହର ସଭ୍ୟତା ଓ ସଂସ୍କୃତି ଠାରୁ ବହୁ ଦୂରରେ, ନିବିଡ ଅରଣ୍ୟାନୀ ମଧ୍ୟରେ ନିରୋଳା ଜୀବନ ଯାପନ କରନ୍ତି । ଏମାନଙ୍କ ମଧ୍ୟରେ ଆଦିମ କାଳର ଆଦିବାସୀ ସଭ୍ୟତା ରହିଛି । ଓଡ଼ିଶାରେ ଏମାନଙ୍କ ସଂଖ୍ୟା ଦୁଇ ଲକ୍ଷରୁ ଅଧିକ ହେବ ।

ଦ୍ୱିତୀୟ ଶ୍ରେଣୀର ଆଦିବାସୀମାନେ ସହର ସଭ୍ୟତାର ସାଧାରଣ ସଂସ୍ପର୍ଶରେ ଆସିଛନ୍ତି । ଏମାନଙ୍କ ଚଳଣୀ ଓ ଆଚାର ବ୍ୟବହାରରେ ସାମାନ୍ୟ ପରିବର୍ତ୍ତନର ସୂଚନା ମିଳେ । କିନ୍ତୁ ସଙ୍ଗୀତ ଓ ନୃତ୍ୟ ଇତ୍ୟାଦି ସାମାଜିକ ଆମୋଦ ପ୍ରମୋଦରେ ସେହି ଆଦିମ ଅବସ୍ଥା ରହିଛି । ଏମାନଙ୍କ ସଂଖ୍ୟା ବାର ଲକ୍ଷ୍ୟରୁ ଅଧିକ ହେବ ।

ଅନ୍ୟ ସମସ୍ତେ ହେଲେ ତୃତୀୟ ଶ୍ରେଣୀର ଆଦିବାସୀ । ଏମାନେ ସହର ସଭ୍ୟତା ଓ ସଂସ୍କୃତିର ନିବିଡ ସଂସ୍ପର୍ଶରେ ଆସି, ପରମ୍ପରାଗତ ଆଦିବାସୀ ସଂସ୍କୃତିକୁ ସମ୍ପୂର୍ଣ୍ଣ ଭାବରେ ବା ଆଂଶିକ ଭାବରେ ପରିତ୍ୟାଗ କରି ଅଛନ୍ତି । ଅଣ ଆଦିବାସୀ ଲୋକଙ୍କ ଘନିଷ୍ଠ ସଂସ୍ପର୍ଶରେ ଆସି, ଏମାନେ ନିଜର ଚାଲିଚଳଣୀ, ବେଶଭୂଷଣ, କଥୋପ-କଥନ ଓ ରୀତିନୀତିକୁ ପରିମାର୍ଜିତ କରିଅଛନ୍ତି । ଏମାନଙ୍କ ନୃତ୍ୟ ସଙ୍ଗୀତରେ ମଧ୍ୟ ସଭ୍ୟତାର ପରିବର୍ତ୍ତିତ ମୁଦ୍ରା ପ୍ରତିଫଳିତ ।

# ୧୯୭୧ ମସିହା ଜନ ଗଣନା—ଓଡ଼ିଶା ଆଦିବାସୀ ଜନସଂଖ୍ୟା

| କ୍ରମିକ ନମ୍ବର | ଜିଲ୍ଲାର ନାମ | କ୍ଷେତ୍ରଫଳ ବର୍ଗମାଇଲ | ମୋଟ ଜନସଂଖ୍ୟା | ଆଦିବାସୀ | | |
|---|---|---|---|---|---|---|
| | | | | ମୋଟ | ପୁରୁଷ | ସ୍ତ୍ରୀ |
| ୧ | କୋରାପୁଟ | ୯୮୭୪ | ୨୦,୪୩,୨୮୧ | ୧୧,୫୧,୨୩୧ | ୫,୭୭,୧୨୫ | ୫,୭୫,୧୦୭ |
| ୨ | ମୟୂରଭଞ୍ଜ | ୪,୦୨୨ | ୧୪,୩୪,୨୦୦ | ୮,୩୯,୮୩୫ | ୪,୧୯,୧୧୮ | ୪,୨୦,୭୧୭ |
| ୩ | ସୁନ୍ଦରଗଡ଼ | ୩,୭୫୧ | ୧୦,୩୦,୬୫୮ | ୫,୫୦,୪୦୧ | ୨,୭୪,୫୦୦ | ୨,୭୫,୯୦୧ |
| ୪ | କେନ୍ଦୁଝର | ୩,୨୦୬ | ୯,୫୫,୫୧୪ | ୪,୪୮,୭୭୫ | ୨,୨୩,୮୨୭ | ୨,୨୪,୮୦୮ |
| ୫ | ଫୁଲବାଣୀ | ୪,୨୮୪ | ୭,୨୧,୬୭୫ | ୨,୫୦,୭୦୫ | ୧,୨୨,୮୦୨ | ୨,୨୭,୮୦୩ |
| ୬ | କଳାହାଣ୍ଡି | ୫,୦୯୯ | ୧୧,୬୩,୮୬୯ | ୩,୪୦,୫୪୧ | ୧,୬୮,୨୩୯ | ୧,୭୦,୩୦୨ |
| ୭ | ସମ୍ବଲପୁର | ୭,୭୭୩ | ୧୮,୪୪,୮୯୮ | ୫,୧୯,୦୪୭ | ୨,୫୮,୦୧୮ | ୨,୬୧,୦୨[illegible] |
| ୮ | ବଲାଙ୍ଗିର | ୩,୪୩୯ | ୧୨,୬୩,୬୫୭ | ୨,୪୯,୧୩୧ | ୧,୨୩,୫୦୪ | ୧,୨୫,୬୨୭ |
| ୯ | ଢେଙ୍କାନାଳ | ୪,୧୭୭ | ୧୨,୯୩,୯୧୪ | ୧,୭୭,୯୯୮ | ୮୩,୭୩୭ | ୮୩,୨୭୨ |
| ୧୦ | ଗଞ୍ଜାମ | ୪,୮୨୪ | ୨୨,୯୩,୮୦[illegible] | ୨,୨୮,୯୪୫ | ୧,୧୨,୫୦୭ | ୧,୧୬,୪୩୮ |
| ୧୧ | ବାଲେଶ୍ୱର | ୨,୫୦୦ | ୧୮,୩୦,୫୦୪ | ୧,୨୯,୧୯୨ | ୬୫,୨୬୪ | ୬୩,୯୨୮ |
| ୧୨ | ପୁରୀ | ୩,୯୯୯ | ୨୩,୪୦,୮୫୯ | ୮୭,୫୯୧ | ୪୨,୮୪୨ | ୪୩,୭୪୯ |
| ୧୩ | କଟକ | ୪,୨୩୭ | ୩୮,୨୭,୭୭୮ | ୧,୧୦,୭୪୭ | ୫୭,୧୧୧ | ୫୪,୬୩୫ |
| | ଓଡ଼ିଶା ମୋଟ | ୬୦,୧୬୪ | ୨,୧୯,୪୪,୬୧୫ | ୫୦,୭୧,୯୩୭ | ୨୫,୨୭,୭୭୩ | ୨୫,୪୫,୨୭୪ |

## : ଓଡ଼ିଶାର ଆଦିବାସୀ ତାଲିକା :

କୁଳ-ଭୂମିଆ-ଓରାଂ-ସହରା-କନ୍ଧ- କନ୍ଧଦୋରା-ବଣ୍ଡା-ଜୁଆଙ୍ଗ- ସନ୍ତାଳ- ବିଂଝାଲ-
କୋୟା - ଭୂଞ୍ଜା - ଭୁଂଇଆ - ସଅରା - ମହାଲି - ହଲ୍ବା - ଭତ୍ରା - ଭୂମିଜ -
ଦାଲ୍ - ଦେଶୁଆ ଭୂମିଜ - ଡିଡାୟି - ସଉଁତି - ଧରୁଆ - ବାଥୁଡ଼ି - ଅମାନତ୍ୟ-
ପରଜା - ରାଜୁଆର୍ - ମାଟିଆ-ବଂଜାର - ଗଦବା - ଗଣ୍ଡ - ପେଣ୍ଟ୍ୟା-ବିଂଝିଆ-
ପାରେଙ୍ଗା - ହୋ - ବଗତ - କୋରା - ଜାତପୁ - ଖରିଆ (ଖଡ଼ିଆ) - କିଶାନ-
ମିର୍ଧା - ବଇଗା - ବିର୍ହୋର୍ - ଶବର- ଚେଞ୍ଚୁଆ-ଘରା - ଗନ୍ଧିଆ-କନ୍ଧଗୌଡ଼-
କଅଁର୍ - ଖରୱାର୍ - କୋଲ୍ - ଲୋହରା - କୋଲ୍ହା - ମଲ୍ହାର-କରୁଆ-
କୋଟିଆ - ଲୋଧା - ମାଦିଆ - ମାଙ୍କିଡ଼ି - ମାଙ୍କଡ଼ିଆ - ମୁଣ୍ଡା - ମୁଣ୍ଡାରି-ଥରୁଆ
ଇତ୍ୟାଦି ।

କୋଟିଆ : ଏମାନେ ମୁଖ୍ୟତଃ କୋରାପୁଟ ଜିଲ୍ଲାରେ ବସବାସ କରିଥାନ୍ତି । କୁଟିଆ କନ୍ଧ ଓ କୋଟିଆମାନଙ୍କ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ଥିବାର ଜଣା ପଡ଼େନାହିଁ ।

ମାଦିଆ : ଏମାନେ 'କୋୟା' ଜାତିର ଅଂଶ ବିଶେଷ ।

ମାଙ୍କିଡ଼ି ଓ ମାଙ୍କଡ଼ିଆ : ଏହି ଦୁଇ ଜାତି ବିର୍ହୋର୍ ଗୋଷ୍ଠୀର ଅଂଶବିଶେଷ । ବିହାର ପ୍ରଦେଶରେ ଏମାନେ ବହୁଳ ସଂଖ୍ୟାରେ ବସବାସ କରିଥାନ୍ତି ।

ମୁଣ୍ଡା ଓ ମୁଣ୍ଡାରି : କୋଲ୍, ଲହୁରା ଓ କୋଲ୍ହମାନଙ୍କ ପରି ଏମାନେ ହୋ ଜାତିର ଶାଖା ବିଶେଷ ରୂପେ ପରିଗଣିତ ହୋଇଥାନ୍ତି ।

କିଷାନ, ମିର୍ଧା ଓ କୋଡ଼ ବା କୁଡ଼ା : ଏମାନେ ଦ୍ରାବିଡ଼ ବଂଶୋଦ୍ଭବ ଓ ସମସ୍ତେ କିଷାନ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ଅଟନ୍ତି । କିଶାନମାନେ ମାଟି କୋଡ଼ି ବୋହୁଥିବାରୁ ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲାରେ 'କୁଡ଼ା' ନାମରେ ପରିଚିତ ହୁଅନ୍ତି ।

ବଇଗା : ଓଡ଼ିଶାରେ ଏମାନଙ୍କ ସଂଖ୍ୟା ଅତି କମ୍ ।

ବିର୍ହୋର୍ : ବିହାର ପ୍ରଦେଶରେ ଏମାନଙ୍କ ସଂଖ୍ୟା ଅତ୍ୟଧିକ ହେଲେ ମଧ୍ୟ, ଓଡ଼ିଶାରେ ଏମାନଙ୍କ ସଂଖ୍ୟା ଖୁବ୍ କମ୍ ।

ଚେଞ୍ଚୁ : ଦକ୍ଷିଣ ଭାରତରେ ଏମାନେ ବହୁ ସଂଖ୍ୟାରେ ବସବାସ କରିଥାନ୍ତି । ଓଡ଼ିଶାକୁ ଏମାନେ ବେଳେବେଳେ ଆସି ବୁଲି ଯାଇଥାନ୍ତି ।

ଘରା : ଏମାନେ ଗଣ୍ଡମାନଙ୍କର ଏକ ଶାଖା ମାତ୍ର ।

ଗନ୍ଧଆ : ଏମାନେ କୋଲ୍ହା ସମ୍ପ୍ରଦାୟର ଏକ ଶାଖାରୂପେ ବିବେଚିତ ।

କନ୍ଧଗୌଡ : କନ୍ଧ ଓ ଗୌଡ଼ ଜାତିର ପୁରୁଷ ଓ ସ୍ତ୍ରୀମାନଙ୍କ ମିଳନରୁ ଯେଉଁ ବଂଶୋଦ୍ଭବ ଘଟେ, ସେମାନେ କନ୍ଧଗୌଡ଼ ରୂପେ ପରିଚିତ ହୋଇଥାନ୍ତି ।

କଅଁର : ପଶ୍ଚିମ ଓଡ଼ିଶାରେ ଏମାନେ ବସବାସ କରିଥାନ୍ତି । ଏମାନେ ଦ୍ରାବିଡ଼ ଶାଖାର ଅଂଶ ।

କୋଲ : ଲୁହୁର : କୋଲ୍ହ
ଏହି ତିନି ସମ୍ପ୍ରଦାୟ 'ହୋ' ଗୋଷ୍ଠୀର ଅଂଶ ବିଶେଷ ।

ଲୋଧା : ଏମାନେ ଶବର ଜାତିର ଅଂଶ ବିଶେଷ । କେବଳ ଉପକୂଳ ଅଞ୍ଚଳରେ ଲୋଧାମାନେ ବସବାସ କରିଥାନ୍ତି ।

## : ଆଦିବାସୀ ଅର୍ଥ :

ନୃତତ୍ତ୍ୱ ବିଜ୍ଞାନ ଭାଷାକୋଷ ( Dictionary of Anthropology : Winick )ମତେ 'ଆଦିବାସୀ'ର ଅର୍ଥ ହେଲା, 'ଏକାଦିକ୍ରମେ ଏକ ଭାଷା, ଏକ ସଂସ୍କୃତି ଓ ଏକ ସାମାଜିକ ଜୀବନର ମୂଳଦୁଆ ଉପରେ ପ୍ରତିଷ୍ଠିତ ଏକ ସାମାଜିକ ଗୋଷ୍ଠୀ ।

ଆଦିମ କାଳରୁ ଭୂୟାଁ, ଶବର ଓ କନ୍ଧମାନେ ଆମ ଦେଶରେ ବସବାସ କରି ଆସୁଛନ୍ତି । ଐତିହାସିକମାନେ ଏମାନଙ୍କୁ ଆଦିମ ଅଧିବାସୀ ଆଖ୍ୟା ଦେଇଛନ୍ତି । ଭାରତରେ ଆର୍ଯ୍ୟ ଓ ଦ୍ରାବିଡ଼ମାନଙ୍କ ବହୁ ପୂର୍ବରୁ ଏମାନଙ୍କର ସ୍ଥିତି ରହିଥିବା ଜଣାପଡ଼େ ।

ସେହି ଆଦିମ କାଳରୁ ଏମାନଙ୍କ ନିଜସ୍ୱ ସଂସ୍କୃତି ଓ ପରମ୍ପରା ମଧ୍ୟ ରହିଛି । ହରପ୍ପା ଓ ମହେଞ୍ଜୋଦାରୋ ଆର୍ଯ୍ୟେତର ସଂସ୍କୃତିର ମୂକସାକ୍ଷୀରୂପେ ଗୃହୀତ ।

## : ଆଦିବାସୀ ନୃତ୍ୟ ସଂଗୀତ :

ନୃତ୍ୟସଙ୍ଗୀତ ଆଦିବାସୀ ଜୀବନର ସୌଖୀନ ବିଳାସ ନୁହେଁ, ଜୀବନର ଅନ୍ୟ ଏକ ଅଂଶ । ଏହା ସେମାନଙ୍କ ଜୀବନକୁ ସରସ ସୁନ୍ଦର କରିବା ସଙ୍ଗେ ସଙ୍ଗେ ସଂହତ ଓ ସଂଘବଦ୍ଧ କରିଥାଏ । ପ୍ରତିଟି ଧାର୍ମିକ ଓ ସାମାଜିକ ଅନୁଷ୍ଠାନରେ ନୃତ୍ୟ ସଙ୍ଗୀତ ଏକ ମୁଖ୍ୟ ସ୍ଥାନ ଅଧିକାର କରିଥାଏ ।

କେତେକ ଆଦିବାସୀ ସମ୍ପ୍ରଦାୟ ନୃତ୍ୟ ସଙ୍ଗୀତକୁ ଏପରି ଭାବରେ ଆଦର ନେଇଛନ୍ତି ଯେ, ଉକ୍ତ ସମ୍ପ୍ରଦାୟର ଯୁବକ ନିର୍ଦ୍ଦିଷ୍ଟ ନୃତ୍ୟ ସଙ୍ଗୀତରେ ପରାକାଷ୍ଠା ପ୍ରଦର୍ଶନ କରି ନ ପାରିଲେ ଉପଯୁକ୍ତ ପତ୍ନୀଲାଭରୁ ବଞ୍ଚିତ ହୋଇଥାଏ । ତେଣୁ ବିବାହ ପୂର୍ବରୁ ମନ ଧ୍ୟାନ ଦେଇ ସାମାଜିକ ନୃତ୍ୟ ସଙ୍ଗୀତକୁ ମାସ ପରେ ମାସ ଅଭ୍ୟାସ କରି ଆୟତ୍ତ କରିଥାଏ ।

ଆଦିବାସୀମାନେ ବହୁ ଦେବଦେବୀରେ ବିଶ୍ୱାସ ସ୍ଥାପନ କରନ୍ତି । ଏହି ଦେବ-ଦେବୀମାନେ ସେମାନଙ୍କ ଗ୍ରାମ ଓ ସମାଜକୁ ବିପଦ ମୁକ୍ତ କରନ୍ତି ବୋଲି ବିଶ୍ୱାସ କରିଥାନ୍ତି । ଏହି ବିଭିନ୍ନ ପ୍ରକାର ଦେବଦେବୀଙ୍କୁ ସନ୍ତୁଷ୍ଟ କରିବାକୁ ଆଦିବାସୀ-ମାନେ ବିଭିନ୍ନ ଧରଣର ନୃତ୍ୟଗୀତ ପ୍ରଦର୍ଶନ କରିଥାନ୍ତି ।

ବର୍ଷର ବିଭିନ୍ନ ଋତୁରେ ଭିନ୍ନ ଭିନ୍ନ ଉତ୍ସବ ଅନୁଷ୍ଠିତ ହୁଏ । ବର୍ଷସାରା ଆନନ୍ଦ ଉତ୍ସବ ଲାଗି ରହିଥାଏ । ବିଭିନ୍ନ ଉତ୍ସବ ପାଳନ ପାଇଁ ଭିନ୍ନ ଭିନ୍ନ ନୃତ୍ୟ ସଙ୍ଗୀତର ବ୍ୟବସ୍ଥା ରହିଛି । ଏହି ନୃତ୍ୟ ସଙ୍ଗୀତ ମାଧ୍ୟମରେ ଆଦିବାସୀ ଜୀବନର ସୁଖ ଦୁଃଖ, ଭଲମନ୍ଦ ପ୍ରକାଶ ପାଇଥାଏ ।

ଆଦିବାସୀମାନେ ନୃତ୍ୟ ସଙ୍ଗୀତକୁ ଜୀବନର ଅନ୍ୟତମ ଆକର୍ଷଣ ରୂପେ ଗ୍ରହଣ କରିଥାନ୍ତି ।

କେତେକ ଆଦିବାସୀ ଗ୍ରାମରେ ଏଥିପାଇଁ ନୃତ୍ୟ ଘରର ବ୍ୟବସ୍ଥା ରହିଛି । ଏ ଘର ଗାଁ ମଝିରେ ଥାଏ । ସନ୍ଧ୍ୟା ହେଲେ ଆଦିବାସୀମାନେ ବଡ ବଡ କାଠ ଗଣ୍ଡିରେ ନିଆଁ ଲଗାଇ ଉକ୍ତ ସ୍ଥାନକୁ ଆଲୋକିତ କରନ୍ତି । ସେହି ଘର ସାମନାରେ ବଡ

ବଡ ଗଛ ସଂରକ୍ଷିତ ଅବସ୍ଥାରେ ଥାଏ । ଆବାଳବୃଦ୍ଧବନିତା ସେହି ଗଛ ତଳେ ଧାଡ଼ି ହୋଇ ବସନ୍ତି । ଏହି ନାଚ ଘରଟି ଆଦିବାସୀମାନଙ୍କ ପାଇଁ ଏକ ପବିତ୍ର ଘର । କାରଣ ସେହି ଘରେ ପୂର୍ବ ପୁରୁଷଙ୍କ ଅସ୍ଥି ଥାଏ । ଆଦିବାସୀ ଯୁବକ ଯୁବତୀମାନେ ବାଦ୍ୟର ତାଳେ ତାଳେ ଗୀତ ଗାଇ, ପାଦକୁ ପାଦ ମିଳାଇ ନାଚିବା ଆରମ୍ଭ କରନ୍ତି । ସେହି ନୃତ୍ୟ ସଙ୍ଗୀତରେ ନିର୍ଜନ ଗ୍ରାମ ପରିବେଶ ମୁଖରିତ ହୁଏ ନିଃଶବ୍ଦ ଆକାଶରେ ନୃତ୍ୟ ଓ ବାଦ୍ୟର ପ୍ରତିଧ୍ୱନି ଶୁଭେ । ସମଗ୍ର ପରିବେଶ ସ୍ୱପ୍ନିଳ ହୋଇଉଠେ । ଶହ ଶହ ବର୍ଷର ସେହି ଗତାନୁଗତିକ ନୃତ୍ୟ, ବାଦ୍ୟ ଓ ସଙ୍ଗୀତରେ ବନଭୂମି ପ୍ରକମ୍ପିତ ହୁଏ ।

ଆଦିବାସୀ ଗ୍ରାମମାନଙ୍କରେ ଧାଙ୍ଗଡ଼ା ଧାଙ୍ଗିଡ଼ୀମାନଙ୍କ ପାଇଁ ସ୍ୱତନ୍ତ୍ର ଘର ବ୍ୟବସ୍ଥା ରହିଥାଏ । ଅବିବାହିତ ଆଦିବାସୀ ଯୁବକମାନେ ଗୋଟିଏ ଘରେ ଓ ଅବିବାହିତା ଆଦିବାସୀ ଯୁବତୀମାନେ ଆଉ ଗୋଟିଏ ଘରେ ରାତି ଯାପନ କରିଥାନ୍ତି । ଦିନେ ଦିନେ ସାରା ରାତି ଏହି ଧାଙ୍ଗଡା ଧାଙ୍ଗିଡ଼ୀ ଘରମାନ ସଙ୍ଗୀତ ମୁଖରିତ ହୋଇ ଉଠେ । ଧାଙ୍ଗଡ଼ାମାନେ ମିଳିତ କଣ୍ଠରେ ଗୀତ ଗାଇ ପ୍ରଶ୍ନ ପଚାରିଲେ, ଧାଙ୍ଗଡ଼ୀ-ମାନେ ଗୀତ ମାଧ୍ୟମରେ ସେହି ପ୍ରଶ୍ନର ଉତ୍ତର ଦିଅନ୍ତି । ସେହିପରି ଧାଙ୍ଗଡ଼ୀମାନଙ୍କ ଗୀତର ଉତ୍ତର ସେହି ଗୀତ ଜରିଆରେ ଧାଙ୍ଗଡ଼ାମାନେ ଫେରାଇ ଆନ୍ତି । କେବେ କେବେ ଅନ୍ୟ ଗ୍ରାମର ଧାଙ୍ଗଡ଼ାମାନେ ଦଳବାନ୍ଧି ଧାଙ୍ଗଡ଼ୀ ଘରକୁ ଆସିଥାନ୍ତି । ସେମାନେ ସମବୟସୀ ଅବିବାହିତା ଆଦିବାସୀ କନ୍ୟାମାନଙ୍କୁ ନୃତ୍ୟ ପାଇଁ ଡ଼ାକିବା ଦିଅନ୍ତି । ଆଦିବାସୀ କନ୍ୟା କବାଟ କିଳି ଚୁପ୍ ଚାପ୍ ଶୋଇଯାଏ ନାହିଁ । ବେଶ ଭୂଷଣ ହୋଇ ଆଦିବାସୀ ଯୁବକର ଉତ୍ତର ଦେବାକୁ ହସି ହସି ବାହାରି ଆସେ । ଧାଙ୍ଗଡା ଧାଙ୍ଗଡ଼ୀମାନେ ହାତ ଧରାଧରି ହୋଇ, ଗୀତ ଗାଇ ଗାଇ ନାଚନ୍ତି । ସେମାନଙ୍କ ହସ ପରିହାସ, ପ୍ରଶ୍ନ ଉତ୍ତର ଓ ପ୍ରମତ୍ତ ନୃତ୍ୟରେ ଆଦିମ ଅରଣ୍ୟ ଝଙ୍କୃତ ହୁଏ । ସେହି ନୃତ୍ୟ ସଙ୍ଗୀତରେ ଯୌବନର ରଙ୍ଗ ଥାଏ, ଉଛୁଳା ନଈର ଢେଉଥାଏ, ବଣମଲ୍ଲୀର ସୁରଭି ଥାଏ । ଆଦିବାସୀ ଯୁବକ ଯୁବତୀ ଜୁହନ୍ତି ଯେ ଯୌବନ ହିଁ ନାଚେ, ଯୌବନ ହିଁ ଗୀତ ଗାଏ । ଉନ୍ମତ୍ତ ଯୁବକ ଯୁବତୀ ମନ ଭରି, ପ୍ରାଣଭରି ନାଚନ୍ତି । ଜଣେ ଅନ୍ୟ ଜଣକୁ ନିଜର ନାଚ ଓ ଗୀତ ମାଧ୍ୟମରେ ଆକୃଷ୍ଟ କରିବାକୁ ଆଗେଇ ଆସନ୍ତି । ଏହି ନୃତ୍ୟ ଗୀତରେ ନିମଗ୍ନ ଥିଲାବେଳେ ଗୋଟିଏ ଅବିବାହିତ ଆଦିବାସୀ ଯୁବକ, ଆଉ ଏକ ଅବିବାହିତା କନ୍ୟା ପ୍ରତି ଆସକ୍ତ ହୁଏ । ସେ ସେହି କନ୍ୟାକୁ ମୋହିତ କରିବାକୁ ନାନା ଉପାୟ ଅବଲମ୍ବନ କରେ । ଯୁବତୀ କନ୍ୟାର ମନ ମାନିଲେ ସେହି ଯୁବକ ପାଖକୁ ପାଖେଇ ଆସେ । ମନ ନ ପାଇଲେ ମୁହଁ ଫେରାଇ ନିଏ । ଆଉ ଯଦି

ଯୁବକ ଯୁବତୀଙ୍କୁ ପସନ୍ଦ କରେ ଓ ଯୁବତୀ ଯୁବକ ପ୍ରତି ଆସକ୍ତ ହୁଏ, ତାହାହେଲେ ଦିନ କେଇଟା ପରେ ପୁଣି 'ବିବାହ ବାଜା' ବାଜେ । ଏହିପରି ଭାବରେ ନୃତ୍ୟ ସଙ୍ଗୀତ ମାଧ୍ୟମରେ ଆଦିବାସୀ ଯୁବକ ଯୁବତୀ ଏକାଠି ମିଶିବାର ସୁଯୋଗ ପାଇ ଜୀବନ ସାଥୀ ନିର୍ବାଚନ କରିଥାନ୍ତି ।

ସବୁ ପ୍ରକାର ଉତ୍ସବରେ ଗୋଟିଏ ପ୍ରକାର ନୃତ୍ୟ ସଙ୍ଗୀତ ଚଳେନାହିଁ । ବିଭିନ୍ନ ଉତ୍ସବ ପାଇଁ ବିଭିନ୍ନ ପ୍ରକାର ନୃତ୍ୟ ସଙ୍ଗୀତର ବ୍ୟବସ୍ଥା ଅଛି । ଏଥିପାଇଁ ବିଭିନ୍ନ ପ୍ରକାର ବେଶ ଭୂଷଣ ଓ ବାଦ୍ୟର ମଧ୍ୟ ବ୍ୟବସ୍ଥା ଅଛି । ପୁଣି ସବୁ ସମ୍ପ୍ରଦାୟର ଆଦିବାସୀ ଗୋଟିଏ ଧରଣର ବେଶ ଭୂଷଣ, ବାଦ୍ୟ ଓ ନୃତ୍ୟ ସଙ୍ଗୀତ ବ୍ୟବହାର କରନ୍ତି ନାହିଁ ।

ଝୋଡ଼ିଆ ପରଜାମାନଙ୍କ ନୃତ୍ୟରେ ଚଞ୍ଚଳତା ଫୁଟି ଉଠିଥାଏ । ଏମାନଙ୍କ ନୃତ୍ୟକାଳୀନ ପଦଚାଳନା କ୍ଷିପ୍ରତର ଓ କଳାତ୍ମକ ।

କୋନ୍ଧମାନେ ମହିଷୀ, ମୃଗ ଇତ୍ୟାଦିଙ୍କ ସିଂଘମାନ ମସ୍ତକରେ ଖଞ୍ଜି ନୃତ୍ୟ କରିଥାନ୍ତି ।

କନ୍ଧମାନଙ୍କ ସମର ନୃତ୍ୟ ଚିତ୍ତାକର୍ଷକ ଅଟେ ।

ଓରାଂ ଓ ସାନ୍ତାଳମାନେ ସେମାନଙ୍କ ନୃତ୍ୟକାଳୀନ ସଙ୍ଗୀତ ଓ ସଙ୍ଗୀତର ସ୍ୱର ପାଇଁ ଖ୍ୟାତିଲାଭ କରିଛନ୍ତି । ( ପରଜା ସଙ୍ଗୀତ ଅର୍ଥ ବ୍ୟଞ୍ଜକ । )

ଆଦିବାସୀମାନେ ନୃତ୍ୟ ସମୟରେ ସୀତାର, ଡୁଙ୍ଗଡୁଙ୍ଗା, ଢେଙ୍କା, ବଂଶୀ ଏବଂ ଡ୍ରମ ବାଦ୍ୟ ବ୍ୟବହାର କରିଥାନ୍ତି । ପୁଣି ପଶ୍ଚିମ ଓଡ଼ିଶାର କୋହ୍ଲ, କିଶାନ, ମୁଣ୍ଡା, ଓରାଂ ପ୍ରଭୃତି ଆଦିମ ଅଧିବାସୀମାନେ ଦଣ୍ଡ, କରମା, ଡାଲଖାଇ, ପଞ ସହର, ବାଣ୍ଡି ବୋତଲ ରସରକେଲି ପ୍ରଭୃତି ନୃତ୍ୟଗୀତରେ ଢୋଲ, ମାଦଳ ଟିମକି, ମହୁରୀ, ପ୍ରଭୃତି ବାଦ୍ୟ ବ୍ୟବହାର କରିଥାନ୍ତି । ଏହି ଅଞ୍ଚଳର ଗାଉଁଲି, ଆଦିବାସୀ ଗୀତରେ ଋତୁଚିତ୍ର, ଗ୍ରାମଦେବତା ସ୍ତୁତି, ଗ୍ରାମମୁଖ୍ୟ ତଥା ଦେଶାଧି-ପତିଙ୍କ ପ୍ରଶସ୍ତି, ଜନ୍ମ-ମୃତ୍ୟୁ, ଦୁଃଖ-ସୁଖ, ଇନ୍ଦ୍ର ଓ ଧରିତ୍ରୀ ମାତାର ସ୍ତୁତି, ଦୈନନ୍ଦିନ ଜୀବନ ଚିତ୍ର, ସମାଜ ଚିତ୍ର, ପ୍ରକୃତି ଚିତ୍ର ପ୍ରଭୃତି ଅତି ସୁନ୍ଦର ଭାବରେ ଫୁଟି ଉଠିଥାଏ ।

ଆଦିବାସୀ ନୃତ୍ୟର ଚମତ୍କାରିତା ଦେଶ ବିଦେଶରେ ଖ୍ୟାତି ଅର୍ଜନ କରି ପାରିଛି । ଏହାର ସୁନ୍ଦର ତାଳ ଓ ଛନ୍ଦ ଦର୍ଶକଙ୍କୁ ମୋହିତ କରିଥାଏ । ବର୍ତ୍ତମାନ ଆକାଶବାଣୀ ଜରିଆରେ ଆଦିବାସୀ ସଙ୍ଗୀତର ପରିବେଷଣ ଓ ପ୍ରଚାର ଚାଲିଛି ଓ ଏହା ଶ୍ରୋତାମାନଙ୍କୁ ଆଦିବାସୀ ଜୀବନର ସମ୍ୟକ ଧାରଣା ଦେବାରେ ଅଗ୍ରସର ହେଉଛି ।

# : ଆଦିବାସୀ ଭାଷା :

ଓଡ଼ିଶାରେ ଆଦିବାସୀମାନେ କେବଳ କଥିତ ଭାଷା ହିଁ ବ୍ୟବହାର କରିଥାନ୍ତି । ଏମାନଙ୍କ ଲିଖିତ ଭାଷା ନାହିଁ ।

ଆଦିବାସୀମାନଙ୍କର କଥିତ ଭାଷାକୁ ମୁଖ୍ୟତଃ ଦୁଇଟି ଭାଗରେ ବିଭକ୍ତ କରାଯାଏ । ତାହା ହେଲା, ମୁଣ୍ଡାରି ଓ ଦ୍ରାବିଡ଼ ଭାଷା । ମୁଣ୍ଡାରି ଭାଷା ଉତ୍ତର ଭାରତୀୟ ଖେରଓ୍ୱାରୀ ଭାଷାରୁ ଉତ୍ପନ୍ନ । ସ୍ମରଣ ରଖିବାକୁ ହେବ ଯେ ସାନ୍ତାଳମାନେ ଉତ୍ତର ଭାରତରୁ ହିଁ ଓଡ଼ିଶାକୁ ଆସିଥିଲେ । କେବଳ ସାନ୍ତାଳ ନୁହନ୍ତି; ମୁଣ୍ଡା, ହୋ'ମାନେ ମଧ୍ୟ ଏହାର ଅନ୍ତର୍ଭୁକ୍ତ ।

ଶବର, ଗଦବା, ପରେଙ୍ଗ, ଜୁଆଙ୍ଗ ପ୍ରଭୃତି ଭାଷା ଦକ୍ଷିଣ ମୁଣ୍ଡାରି ଭାଷାରୁ ଉତ୍ପନ୍ନ ବୋଲି ଉଲ୍ଲେଖ ଅଛି ।

ଦ୍ରାବିଡ଼ ଆଦିବାସୀ ଭାଷାରୁ କୁଇ,କୁଭି,ଅଲଗୁ, କିଶାନ ଓ ଓରାଂ ପ୍ରଭୃତି ଭାଷାର ସୃଷ୍ଟି ।

ମୁଣ୍ଡାରି ଭାଷା ବ୍ୟବହାର କରୁଥିବା ଆଦିବାସୀ ସମ୍ପ୍ରଦାୟ ମଧ୍ୟରେ ସାନ୍ତାଳମାନଙ୍କ ସଂଖ୍ୟା ସର୍ବାଧିକ । ୧୯୩୨ ମସିହାର ଏକ ଗବେଷଣାରୁ ଜଣାଯାଏ ଯେ, ସାନ୍ତାଳୀ ଭାଷା ବ୍ୟବହାର କରୁଥିବା ଆଦିବାସୀମାନଙ୍କ ସଂଖ୍ୟା ତିନି ଲକ୍ଷରୁ ଅଧିକ । ଏବେ ୪୩ ବର୍ଷ ପରେ ସଂଖ୍ୟା ଅନେକ ବଢିଥିବ । ପି. ବଡିଂ ସାହେବ (Rev. P. Bodding) ତାଙ୍କ ଭାଷାକୋଷରେ ୨୫ ହଜାର ସାନ୍ତାଳୀ ଶବ୍ଦ ଲିପିବଦ୍ଧ କରିଅଛନ୍ତି ।

ବର୍ତ୍ତମାନ ସାନ୍ତାଳୀ ଭାଷା ଏକ ସବଳ,ସଂସ୍କୃତ ଓ ସ୍ୱଚ୍ଛସଂପନ୍ନ ଭାଷ ରୂପେ ଗୃହୀତ । ଇଂରେଜ ମିଶନାରୀମାନେ ଏହି ଭାଷା ପାଇଁ ରୋମାନ ଲିପିର ପ୍ରବର୍ତ୍ତନ କରିଅଛନ୍ତି ଏବଂ ଏକ ଅଭିଧାନ ମଧ୍ୟ ପ୍ରକାଶ କରିଛନ୍ତି ।

ଯଦି ଆଦିବାସୀ ଭାଷା ଭବିଷ୍ୟତରେ ଲିଖିତ ଭାଷାର ଗୌରବ ପାଏ, ତେବେ ସର୍ବପ୍ରଥମେ ସାନ୍ତାଳୀ ଭାଷା ଏ ଗୌରବର ଅଧିକାରୀ ହେବ ।

ମୁଣ୍ଡାରି ଅପେକ୍ଷା ଦ୍ରାବିଡ଼ୀୟ ଭାଷା ପ୍ରଥମେ ଆଦିବାସୀମାନଙ୍କ ମଧ୍ୟରେ ପ୍ରଚଳିତ ଥିଲି ବୋଲି ଗବେଷକମାନେ ଅନୁମାନ କରିଥାନ୍ତି । ଗଦବାମାନଙ୍କ ମଧ୍ୟରୁ କେତେକ ମୁଣ୍ଡାରି ଭାଷା ଓ ଅନ୍ୟମାନେ ଦ୍ରାବିଡୀୟ ଭାଷା ବ୍ୟବହାର କରନ୍ତି ।

ଆଦିବାସୀ ଭାଷାମାନଙ୍କ ମଧ୍ୟରୁ ସାନ୍ତାଳୀ ଭାଷା ବିଷୟରେ ଅଧିକ ଗବେଷଣା କରାଯାଇଛି ।

ଆଦିବାସୀମାନଙ୍କ ମଧ୍ୟରୁ କେତେକ ଆଦିମ ଶ୍ରେଣୀୟ ଆଦିବାସୀ ଏବେ ମଧ୍ୟ ଘନ ଅରଣ୍ୟ ମଧ୍ୟରେ ବାସ କରନ୍ତି । ସେମାନେ ସଭ୍ୟତା ବା ନୂତନ ପୃଥିବୀର ସମ୍ପର୍କରେ ଆସି ପାରିନାହାନ୍ତି । ଏମାନେ ନିଜ ଭାଷା ବ୍ୟତୀତ ଅନ୍ୟ କୌଣସି ଭାଷା ଶିଖି ନାହାନ୍ତି । ଅନ୍ୟମାନଙ୍କ ମଧ୍ୟରୁ କେତେକ ଦ୍ୱିଭାଷୀ ଓ ଆଉ କେତେକ ତ୍ରିଭାଷୀ ମଧ୍ୟ ।

କେନ୍ଦୁଝର ଜିଲ୍ଲାର ଜୁଆଙ୍ଗ ଓ ସୁନ୍ଦରଗଡ଼ ଜିଲ୍ଲାର କିଶାନମାନେ ନିଜ ମାତୃଭାଷା ବ୍ୟତୀତ ସ୍ଥାନୀୟ ଓଡ଼ିଆ (ସମ୍ବଲପୁରୀ) ଭାଷାରେ କଥାବାର୍ତ୍ତା କରନ୍ତି ।

କେତେକ ଆଦିବାସୀ ନିଜ ଭାଷା ଭୁଲିଯାଇ ଅଣ-ଆଦିବାସୀ ଭାଷାକୁ ମାତୃଭାଷାରୂପେ ଗ୍ରହଣ କରି ନେଲେଣି । ବଲାଙ୍ଗୀର, ସମ୍ବଲପୁର ପ୍ରଭୃତି ଅଞ୍ଚଳରେ ବସବାସ କରୁଥିବା ଗଣ୍ଡମାନେ ଏହି ଶ୍ରେଣୀୟ ।

# ସାମ୍ୟ : ବୈଷମ୍ୟ ପ୍ରସଙ୍ଗ

ଓଡ଼ିଶାରେ ବସବାସ କରୁଥିବା ଆଦିବାସୀମାନଙ୍କ ମଧ୍ୟରେ କେତେକ ଆଦିମ ଆଦିବାସୀ ଅଛନ୍ତି । ସେମାନେ ହେଲେ କନ୍ଧ, ଶବର, ପରଜା, କୋୟା, ଭୂମିଜ, ବଣ୍ଡା ପରଜା, ଗଦବା ପ୍ରଭୃତି । ଏହି ଶ୍ରେଣୀର ଆଦିବାସୀମାନେ ସହର ସଭ୍ୟତା ଠାରୁ ବହୁ ଦୂରରେ ବଣପାହାଡ଼ ଭିତରେ ବସବାସ କରିଥାନ୍ତି । ଏମାନେ ଯେଉଁଠି ବାସ କରନ୍ତି, ସେଇଠି ଗମନାଗମନର ସୁବିଧା ସୁଯୋଗ ନ ଥାଏ । ଆଧୁନିକ ସଭ୍ୟ ଲୋକଙ୍କ ଆଖିରେ ସେମାନଙ୍କ ଜୀବନ ଯାପନ ପ୍ରଣାଳୀ ଅତି ଅଦ୍ଭୁତ ଓ ଅସଲଗ୍ନ ମନେ ହୁଏ ।

ଏହି ଆଦିବାସୀମାନଙ୍କ ମଧ୍ୟରେ ଏକ ପ୍ରକାର ବ୍ୟବସ୍ଥା ଚଳେ ନାହିଁ । ଏମାନଙ୍କ ସାମାଜିକ ଜୀବନ ପରସ୍ପର ଠାରୁ ଭିନ୍ନ ଏବଂ ଏମାନଙ୍କ ସଂସ୍କୃତିରେ ମଧ୍ୟ ବୈଷମ୍ୟ ପରିଲକ୍ଷିତ ହୋଇଥାଏ । ତଥାପି ଏମାନଙ୍କ ଚଳଣୀରେ କିଛି ସାମ୍ୟ ରହିଛି । ଆଦିବାସୀ ସମ୍ପ୍ରଦାୟ ସବୁଠୁ ସ୍ୱାଧୀନଚେତା ଅଟନ୍ତି । ଏମାନେ ଅତି ମାତ୍ରାରେ ପରଂପରା ଓ ସଂସ୍କୃତି ପ୍ରିୟ । ଏହି ସଂସ୍କୃତିକୁ ସେମାନେ ନାନା ଅସୁବିଧା ସତ୍ତ୍ୱେ ନିଜ ଭିତରେ ଅତି ସତର୍କତାର ସହିତ ବଞ୍ଚାଇ ରଖିଛନ୍ତି ।

ଇତିହାସରୁ ଜଣାଯିବ ଯେ, ଅପେକ୍ଷାକୃତ ବୁଦ୍ଧିମାନ ଦ୍ରାବିଡ଼ ଓ ଆର୍ଯ୍ୟମାନେ ଏମାନଙ୍କୁ ନାନା ପ୍ରକାର ହଇରାଣ ହରକତ, ଅତ୍ୟାଚାର କରି ଓ ଏମାନଙ୍କ ସଙ୍ଗେ ଯୁଦ୍ଧ କରି ଏମାନଙ୍କର ବାସସ୍ଥାନ, ଗ୍ରାମ ଓ ପୁରପଲ୍ଲୀ ସବୁ ଅଧିକାର କରିନେଲେ । ଫଳରେ ଆଦିବାସୀମାନେ ନିଜ ଗୃହ, ନିଜ ଗ୍ରାମ ପରିତ୍ୟାଗ କରି ବଣ ଜଙ୍ଗଲକୁ ପଳାୟନ କଲେ । ଦୁର୍ବଳ ଉପରେ ସବଳର ଅତ୍ୟାଚାର ଯୁଗ ଯୁଗ ଧରି ଲାଗି ରହିଛି ।

ଏହି ଆଦିବାସୀମାନେ ବଣ ଜଙ୍ଗଲରେ ଆତ୍ମଗୋପନ କରିବା ହେତୁ ଇତିହାସ ପ୍ରବାହରେ ନିଜକୁ ସାମିଲ କରି ପାରିଲେ ନାହିଁ । ସଭ୍ୟତାର ଆଲୋକ ଏମାନଙ୍କୁ

ସ୍ପର୍ଶ କରି ପାରିଲେ ନାହିଁ। ଏମାନେ ଯୁଗ ଯୁଗ ଧରି ଅନାର୍ଯ୍ୟ, ଅସଭ୍ୟ ହୋଇ ରହିଗଲେ ।

ଏହିପରି ଅସଂପୃକ୍ତ, ଅସଲଗ୍ନ ଜୀବନ ଯାପନ କରୁଥିବା ଆଦିବାସୀମାନେ ଅଶିକ୍ଷିତ, ନିର୍ଦ୍ଧନ ହେବା ସ୍ୱାଭାବିକ। ଏମାନେ ଏବେ ମଧ୍ୟ ଚରମ ଆର୍ଥିକ ଦୁର୍ଗତି ଭୋଗ କରନ୍ତି ।

ବର୍ତ୍ତମାନ ବିଭିନ୍ନ ଯୋଜନା ମାଧ୍ୟମରେ ଆଦିବାସୀମାନଙ୍କ ଉନ୍ନତି ପାଇଁ ବିଭିନ୍ନ ବ୍ୟବସ୍ଥା ଅବଲମ୍ବନ କରାଯାଉଛି । ଜମିହୀନଙ୍କୁ ଜମି ଯୋଗାଇ, ହଳ ବଳଦ ଯୋଗାଇ ଓ ଗମନାଗମନ ପଥ ଉନ୍ମୋଚିତ କରାଯାଇ ଏହି ପଛୁଆ ଆଦିବାସୀମାନଙ୍କୁ ସଭ୍ୟତାର ପ୍ରବାହରେ ସାମିଲ କରିବା ପାଇଁ ଚେଷ୍ଟା କରାଯାଉଛି ।

ଏହି ଉତ୍ତରଣ ସମୟରେ ମଧ୍ୟ ଆଦିବାସୀମାନଙ୍କ ମନରେ ଦୋ ଦୋ ପାଞ୍ଚ ଭାବ । ଗୋଟିଏ ପକ୍ଷରେ ପାରମ୍ପାରିକ ସଂସ୍କୃତିକୁ ଏମାନେ ପରିତ୍ୟାଗ କରିବାକୁ ନାରାଜ । ଏଣେ ଇତିହାସ ହାତ ଠାରି ଡାକୁଛି । କହୁଛି, ମୋର ପ୍ରବାହରେ ମିଶିଯାଅ ! ତୁମର ବାସ ଗ୍ରାସର ବ୍ୟବସ୍ଥା କରିବ । ରହିଛ କଣ ? ଆସ !

ଏହା ଏକ ସମସ୍ୟା ଶଙ୍କୁଳ ସମୟ ।

ଏହି ସମୟରେ ଏକ ସଜାଗ ପଦକ୍ଷେପ ଗ୍ରହଣୀୟ ।

ଆଦିବାସୀମାନଙ୍କ ସାଂସ୍କୃତିକ ସଂସ୍କୃତିକୁ ଆଖି ଆଗରେ ରଖି ଯାହା କିଛି କରିବା ଆବଶ୍ୟକ । ହଠାତ୍ କିଛି ନ କରି, ଜଗି ରଖି, ସବୁ କଥା ଭାବି, ହାତେ ମାପି ଗୃହଖଣ୍ଡେ ଗୁଲିବା ଭଲ । ଏଭଳି ଅବସ୍ଥା ସୃଷ୍ଟି କରିବା ବାଞ୍ଛନୀୟ, ଯେଉଁଭଳି ପରିସ୍ଥିତିରେ ଆଦିବାସୀମାନେ ନିଜେ ନିଜକୁ ପ୍ରସ୍ତୁତ କରି, ନିଜର ଆର୍ଥିକ ଅବସ୍ଥାର ଉନ୍ନତି ପାଇଁ ନିଜେ ନିଜେ ଆଗେଇ ଆସି ଐତିହାସିକ ଡାକରାରେ ସହଯୋଗ କରିବେ ।

## : ଆଦିବାସୀ ଜୀବନ :

( ସାମ୍ୟ ପ୍ରସଙ୍ଗ )

ଆଦିବାସୀମାନେ ବିଭିନ୍ନ ଭାଷା ଓ ଗୋଷ୍ଠୀ ଅନ୍ତର୍ଭୁକ୍ତ ହେଲେ ମଧ୍ୟ ସେମାନଙ୍କ ସାମାଜିକ ଜୀବନ ଓ ପରଂପରାରେ ଅନେକ ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ ।

ସମସ୍ତ ଗୋଷ୍ଠୀର ଆଦିବାସୀମାନେ ନୃତ୍ୟ ଓ ସଙ୍ଗୀତ ପ୍ରିୟ । ବିଭିନ୍ନ ପର୍ବପର୍ବାଣୀ ଓ ବିବାହ ପ୍ରଭୃତି ସାମାଜିକ ଅନୁଷ୍ଠାନମାନଙ୍କରେ ନୃତ୍ୟ ଓ ଗୀତ ପ୍ରଧାନ ସ୍ଥାନ

ଅଧିକାର କରିଥାଏ । କିନ୍ତୁ ଲକ୍ଷ୍ୟ କରିବାର କଥା, ଏହି ନୃତ୍ୟର ପଦ୍ଧତି, ବେଶ ଭୂଷଣ, ଗୀତ ଓ ବାଦ୍ୟରେ ପାର୍ଥକ୍ୟ ଥାଏ ।

ଆଦିବାସୀମାନଙ୍କର ବିବାହ ପଦ୍ଧତି ଓ ଶୁଦ୍ଧିକ୍ରିୟା ପ୍ରାୟ ସମାନ ଧରଣର ।

ଆଦିବାସୀମାନଙ୍କର ଖାଦ୍ୟପେୟରେ ମଧ୍ୟ ସାମଞ୍ଜସ୍ୟ ଥିବା ଦେଖାଯାଏ । ଆଦିବାସୀମାନେ ମାଂସପ୍ରିୟ । ଏମାନେ କୁକୁଡ଼ା, ଛେଳି, ମେଣ୍ଢା ଓ ବଣ୍ୟ ଜୀବଜନ୍ତୁ ଶିକାର କରି ଖାଆନ୍ତି । ପୁଣି ଏହି ଉଦ୍ଦେଶ୍ୟରେ ନାନା ପ୍ରକାର ପଶୁପକ୍ଷୀ ପାଳନ କରିଥାନ୍ତି ।

ଆଦିବାସୀମାନେ ମଦ୍ୟ ପ୍ରିୟ ।

ଅନେକ କ୍ଷେତ୍ରରେ ଆଦିବାସୀମାନେ ରୋଗର କାରଣ ଓ ନିରାକରଣ ସମ୍ପର୍କରେ ଏକା ଭଳି ବିଶ୍ୱାସ ସ୍ଥାପନ କରିଥାନ୍ତି ।

ଆଦିବାସୀମାନଙ୍କ ମଧ୍ୟରେ ଏକାଧିକ ବିବାହ ପ୍ରଚଳନ ଅଛି । କିନ୍ତୁ ଏମାନେ ଏକା ଗୋତ୍ରରେ ବିବାହ କରନ୍ତି ନାହିଁ ।

ଆଦିବାସୀମାନେ ପୂର୍ବ ଜନ୍ମରେ ବିଶ୍ୱାସ କରିଥାନ୍ତି ।

## : ଆଦିମ ଆଦିବାସୀ ସଂଖ୍ୟା ନିର୍ଣ୍ଣୟ :

ଆଦିମ ଯୁଗର ଆଦିବାସୀମାନେ ସାଧାରଣତଃ ଓଡ଼ିଶାର ନିମ୍ନଲିଖିତ ଅଞ୍ଚଳରେ ବସବାସ କରିଥାନ୍ତି । ସେମାନଙ୍କ ଜୀବନ ଧାରଣର ମାନ ମଧ୍ୟ ସର୍ବନିମ୍ନ ଅବସ୍ଥାରେ ରହିଛି । ଏମାନେ ନିତାନ୍ତ ଅନୁନ୍ନତ, ଦରିଦ୍ର ଅବସ୍ଥାରେ ଓଡ଼ିଶାର ନିମ୍ନଲିଖିତ ଅବହେଳିତ ଅଞ୍ଚଳର ଅଧିବାସୀ ବୋଲି ୧୯୭୧ ଜନଗଣନା ରିପୋର୍ଟରୁ ଜଣାଯାଇଛି ।

| ଜିଲ୍ଲାର ନାମ | ସବ୍‌ଡିଭିଜନ | ଅନୁନ୍ନତ ଆଦିବାସୀ ସମ୍ପ୍ରଦାୟ | ହାରାହାରି ଜନସଂଖ୍ୟା |
|---|---|---|---|
| ୧: କୋରାପୁଟ | ରାୟଗଡ଼ା | ଡଙ୍ଗରିଆ କନ୍ଧ | ୨୦,୦୦୦ |
| | | ଦେଶିଆ କନ୍ଧ | ୨୫,୦୦୦ |
| | | କୁଟିଆ କନ୍ଧ | ୫,୦୦୦ |
| | | କନ୍ଧ | ୧୫,୦୦୦ |
| | ଗୁଣୁପୁର | ଲାଂଜିଆ ଶବର | ୧୫,୦୦୦ |

| | | | |
|---|---|---|---|
| | | କୁଟିଆ କନ୍ଧ | ୩,୦୦୦ |
| | | ସଉରା | ୫୬,୦୦୦ |
| | ମାଲକାନଗିରି | ବଣ୍ଡା ପରଜା | ୧୦,୦୦୦ |
| | | କୋୟା | ୩୦,୦୦୦ |
| | ନବରଙ୍ଗପୁର | ବଂଜାରା | |
| | କୋରାପୁଟ ସଦର | କନ୍ଧ | ୮୪,୦୦୦ |
| | | ଗଦବା | ୨୫,୦୦୦ |
| | | ଜାତପୁ | ୧୫,୦୦୦ |
| ୨: ଗଂଜାମ | ପାରଳା ଖେମୁଣ୍ଡି | ଲାଂଜିଆ ଶବର | ୫୦,୦୦୦ |
| ୩: ଫୁଲବାଣୀ | ବାଲିଗୁଡ଼ା | କୁଟିଆକନ୍ଧ | ୧୫,୦୦୦ |
| ୪: କେଉଁଝର | କେଉଁଝର ସଦର | ଜୁଆଙ୍ଗ | ୧୭,୦୦୦ |
| | | ପଉଡ଼ି ଭୂୟାଁ | ୨୦,୦୦୦ |
| ୫: ସୁନ୍ଦରଗଡ଼ | ବଣାଇ | ପଉଡ଼ିଭୂୟାଁ | ୧୫,୦୦୦ |
| | | ବିର୍ ହୋର୍ | ୫,୦୦୦ |
| ୬: ଢେଙ୍କାନାଳ | ପାଲଲହଡ଼ା | ପଉଡ଼ି ଭୂୟାଁ | ୨୦,୦୦୦ |
| | | ଜୁଆଙ୍ଗ | ୨,୦୦୦ |

## : କେତେକ ଐତିହାସିକ ତଥ୍ୟ :

### ଭାରତୀୟ ସାହିତ୍ୟ ଓ ଶିଳାଲେଖରେ ଆଦିବାସୀ

● ହଣ୍ଟର ସାହେବ (W.W.Hunter) ତାଙ୍କର 'ଭାରତୀୟ ଶାସନରେ ଓଡ଼ିଶା' (Orissa under Indian rule) ପୁସ୍ତକରେ ନିମ୍ନଲିଖିତ ମତେ ଲିପିବଦ୍ଧ କରିଅଛନ୍ତି।

The Savaras appear in very early Sanskrit writings, and are spoken of by them with even more than usual detestation. As the sudras, or aboriginal tribes who had been subdued in to the servile castes of Aryan common wealth, sprung from the feet of Brahma, so the Savaras and other forest races who successfully withstood the invaders, Proceeded from the sweat at a cow. They were goblins, they were devils, they were raw-eaters, they were man-eaters; and the Vishnu Purana has concentrated The national antipathy towords them. in its picture of a dwarfish race; with flat noses and skin the colour of a charred stake. Another sacred text assurtes us that they were as black as crows, with tawny hair, red eyes, a chin jutting out, short arms and legs and the typical flat nose. They seem to have their individuality strongly felt in ancient

India. The beginning of their territory long marked the last point of the Aryan advance. They are spoken as 'border tribes' who resisted the Sanskrit invaders, scattered arneies, and earned for themselves the title of the 'terrible savars'.

ଏହାର ମୋଟାମୋଟି ଅର୍ଥ ହେଲା, ଶବରମାନେ ସଂସ୍କୃତ ସାହିତ୍ୟରେ ମଧ୍ୟ ସ୍ଥାନ ପାଇଛନ୍ତି । ସେମାନେ ବ୍ରହ୍ମାଙ୍କର ପାଦରୁ ଜାତ 'ଶୂଦ୍ର' ଭାବରେ ଖ୍ୟାତ । ଏମାନେ ଆଦିମ ଅଧିବାସୀ ଅଟନ୍ତି ।

ଶବରମାନଙ୍କୁ ରାକ୍ଷସ, ନରଖାଦକ ଭାବରେ ଚିତ୍ରଣ କରାଯାଇଛି ।

'ବିଷ୍ଣୁ ପୁରାଣ'ରେ ଏମାନଙ୍କ ଘୃଣିତ ଚିତ୍ର ଦେଖିବାକୁ ମିଳେ ।

ଏମାନଙ୍କ ଶରୀର ବର୍ଣ୍ଣନା କରାଯାଇ କୁହାଯାଇଛି ଯେ, ଏମାନେ ବାମନକାୟ, ଚେପଟା ନାକ ଯୁକ୍ତ ଓ କୋଇଲା ପରି ନିପଟ କଳା ରଂଗର ।

ଆଉ ଏକ ପୁରାଣରେ ଏମାନେ କାଉ ପରି କଳା, ଠିଆ ଠିଆ କେଶଯୁକ୍ତ, ଲୋହିତ ଚକ୍ଷୁ ବିଶିଷ୍ଟ, ଚେପଟା ନାକ ଓ କ୍ଷୁଦ୍ର ହସ୍ତ ପଦ କମ୍ଭୂତ କମାକାର ମଣିଷ ରୂପରେ ବର୍ଣ୍ଣିତ ।

ଏମାନେ ମଧ୍ୟ ଉପାନ୍ତ ରାଜ୍ୟ ଅଧିବାସୀ ରୂପେ ବର୍ଣ୍ଣିତ ।

● ରାମାୟଣରେ ଭଗବାନ ରାମଚନ୍ଦ୍ର ଏକ ଶବରୁଣୀ ହାତରୁ ଫଳ ଭକ୍ଷଣ ଏବଂ ଗୁହକ ଶବର ସଙ୍ଗରେ ମିତ୍ରତା ସ୍ଥାପନ କଥା ବର୍ଣ୍ଣିତ ହୋଇଛି । ଏଥିରୁ ଆର୍ଯ୍ୟମାନଙ୍କର ଅନାର୍ଯ୍ୟ ଶବରମାନଙ୍କ ସାଙ୍ଗରେ ସହାବସ୍ଥାନ ନୀତି ପ୍ରତିଫଳିତ ।

● ମହାଭାରତରେ ପଂଚପାଣ୍ଡବମାନେ ବାରମ୍ବାର ବଣୁଆ ଲୋକଙ୍କ ସଙ୍ଗେ ସାକ୍ଷାତ ଓ ବନ୍ଧୁତା ସ୍ଥାପନ କଥା ବର୍ଣ୍ଣିତ ହୋଇଛି । ଏପରିକି ଏହି ବଣୁଆ ମାନଙ୍କ ସଙ୍ଗେ ବୈବାହିକ ସମ୍ବନ୍ଧ ସ୍ଥାପନ ଦୃଶ୍ୟ ଆମେ ମହାଭାରତରେ ପଢ଼ିଥାଉଁ ।

● ସମ୍ରାଟ ଅଶୋକ ବୌଦ୍ଧ ଧର୍ମରେ ଦୀକ୍ଷିତ ହେବାପରେ ଯେଉଁ ଶିଳାଲେଖମାନ ଉତ୍କୀର୍ଣ୍ଣ କରି ଅଛନ୍ତି, ତହିଁରେ ଅରଣ୍ୟ ଅଧିବାସୀମାନଙ୍କ ପ୍ରତି ଦୟା ପ୍ରଦର୍ଶନ କଥା ବର୍ଣ୍ଣିତ ହୋଇଛି ।

ଏହି ଶିଳାଲେଖ କେବଳ ଭାରତ କାହିଁକି, ସମଗ୍ର ପୃଥିବୀରେ ପ୍ରଥମ ଦୃଷ୍ଟାନ୍ତ ଅଟେ, ଯହିଁରେ ଅରଣ୍ୟ ଅଧିବାସୀଙ୍କ ପ୍ରତି ରାଷ୍ଟ୍ରୀୟ ଆଭିମୁଖ୍ୟ ସ୍ପଷ୍ଟ ହୋଇ ଯାଇଛି ।

## ● ମଧ୍ୟଯୁଗରେ ଆଦିବାସୀମାନଙ୍କ ପ୍ରତି ଦୃଷ୍ଟି କୋଣ :

ପଠାଣମାନଙ୍କ ଭାରତ ଆକ୍ରମଣ ଠାରୁ ଇଂରେଜ ସାମ୍ରାଜ୍ୟ ସ୍ଥାପନ ପର୍ଯ୍ୟନ୍ତ କାଳକୁ ଭାରତ ଇତିହାସରେ ମଧ୍ୟଯୁଗ ଭାବରେ ଗ୍ରହଣ କରାଯାଇଥାଏ ।

ଏହି ସମୟସୀମା ଭିତରେ ଆଦିବାସୀମାନଙ୍କ ପ୍ରତି କୌଣସି ଶାସକ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ଗ୍ରହଣ କରିନଥିଲେ । ଅବସ୍ଥାକୁ ଚାହିଁ ବ୍ୟବସ୍ଥା ଅବଲମ୍ବନ କରାଯାଉଥିଲା ।

ଏହି ସମୟରେ କେତେକ ଆଦିବାସୀ ଶକ୍ତି ମସ୍ତକ ଉତ୍ତୋଳନ କରିଥିଲା । ଏମାନଙ୍କୁ ଇତିହାସ ବୀର ଓ ଯୋଦ୍ଧା ଭାବରେ ସମ୍ମାନ ପ୍ରଦର୍ଶନ କରିଛି । ଏମାନେ ନିଜ ନିଜର ଅଧ୍ୟୁଷିତ ଅଞ୍ଚଳରେ ନିଜକୁ ରାଜା ରୂପରେ ପ୍ରତିଷ୍ଠା କରିଥିଲେ । ପୁଣି ସଂଲଗ୍ନ ରାଜ୍ୟମାନ ବିଜୟ କରି ନିଜ ରାଜ୍ୟ ସଙ୍ଗେ ସାମିଲ କରିଥିଲେ । ଇତିହାସରେ ରାଜପୁତ ଓ ଗଣ୍ଡମାନେ ଏଥିପାଇଁ ଖ୍ୟାତି ଲାଭ କରିଅଛନ୍ତି ।

ପଠାଣ, ମୋଗଲ ଓ ମରହଟ୍ଟାମାନେ ଆଦିବାସୀ ସର୍ଦ୍ଦାରମାନଙ୍କୁ ପୃଷ୍ଠପୋଷକତା କରିଥିବା ଜଣାଯାଏ । ଏମାନେ ଆଦିବାସୀମାନଙ୍କ ସାହସିକତାରେ ମୁଗ୍ଧ ହୋଇ ସେମାନଙ୍କୁ ରାଜ୍ୟ ପରିଚାଳନା କ୍ଷେତ୍ରରେ ନିଯୁକ୍ତି ପ୍ରଦାନ କରିଥିଲେ । କେବେ କେବେ ଏମାନଙ୍କୁ କିଛି କିଛି ଭୂସମ୍ପତ୍ତି ମଧ୍ୟ ପ୍ରଦାନ କରୁଥିଲେ । କିନ୍ତୁ ଏମାନଙ୍କୁ ସ୍ୱାଧୀନ ରାଜା ହିସାବରେ ସ୍ୱୀକୃତି ପ୍ରଦାନ କରିବାକୁ କୁଣ୍ଠାବୋଧ କରୁଥିଲେ । ତତ୍ ସଙ୍ଗେ ସଙ୍ଗେ ଏମାନଙ୍କ ସଙ୍ଗରେ ଭୀଷଣ ଯୁଦ୍ଧ ସଂଘର୍ଷମାନ ଘଟିଥିଲା ।

ମଧ୍ୟଯୁଗରେ ଆଉ ଏକ ଘଟଣା ହେଲା, ଅଧିକ ସଭ୍ୟ ଆର୍ଯ୍ୟଜାତି ଆଦିବାସୀମାନଙ୍କ ଭୂସମ୍ପତ୍ତି ଜବରଦଖଲ କରିବା ଉଦ୍ଦେଶ୍ୟରେ ସେମାନଙ୍କ ସଙ୍ଗରେ ସଂଘର୍ଷ କଲେ । ଆଦିବାସୀମାନେ ପାରି ନ ପାରି ରାଜ୍ୟ ଛାଡ଼ି ଅରଣ୍ୟ ଭିତରକୁ ପଳାୟନ କଲେ । ଏତଦ୍ୱାରା ଆଦିବାସୀମାନେ ନିର୍ଜନ ଜୀବନ ଯାପନ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଆଦିମ ସଭ୍ୟତା ଓ ସଂସ୍କୃତିକୁ ରକ୍ଷା କରିବାରେ ସମର୍ଥ ହେଲେ ।

## ଇଂରେଜ ରାଜୁତି କାଳରେ ଆଦିବାସୀ :

ମଧ୍ୟଯୁଗର ଅବସାନ ପରେ, ଅର୍ଥାତ୍ ଇଂରାଜୀ ରାଜୁତିବେଳେ ଆଦିବାସୀମାନେ ଅସଂପୃକ୍ତ ଜୀବନ ଯାପନ କରୁଥିବା ଦେଖିବାକୁ ମିଳେ । ଏକ ଶହରୁ ଅଧିକ ବର୍ଷ କାଳ ଏମାନେ ବଣ ଜଙ୍ଗଲରେ ବାସ କଲେ ।

ଇଂରେଜ ମିଶନାରୀମାନେ ଅନୁନ୍ନତ ଅଞ୍ଚଳ ଓ ବଣ ପାହାଡ଼ରେ ବାସ କରୁଥିବା ଆଦିବାସୀମାନଙ୍କ ଅବସ୍ଥା ସମ୍ପର୍କରେ ସରକାରଙ୍କୁ ଜଣାଇଲେ । କିନ୍ତୁ ଇଂରେଜ ଶାସନର ପ୍ରଭାବ ଆଦିବାସୀମାନଙ୍କୁ କେଉଁ ଅବସ୍ଥାରେ ଆଣି ପହଞ୍ଚାଇ ଥିଲା ସେ ସମ୍ପର୍କରେ ହଟନ୍ ସାହେବ (Dr. J. H. Hutton) କହନ୍ତି—

''Far from being of immediate benefit to the Primitive tribes, the establishment of British rule in India did most of them much more harm than good. It may be said that the early days of British administration did very great detriment to the economic position of tribes through ignorance and neglect of their rights and customs many changes have been caused incidently by the penetration of the tribal country, the opening up of communication, the protection of forest and the establishment of schools to say nothing of the opening given in this way to Christian Missions. Many of the opening given in this way to Christian Missions. Many of the results of these changes have caused acute discomforts to the tribes.

ଏହାର ଭାବାର୍ଥ ହେଲା, ଇଂରେଜୀ ଶାସକମାନେ ଆଦିବାସୀମାନଙ୍କର ଉପକାର କରିବା ପରିବର୍ତ୍ତେ ଅନିଷ୍ଟ ହିଁ ସାଧନ କରିଛନ୍ତି । ଇଂରାଜୀ ଶାସନର ପ୍ରଥମ ଅବସ୍ଥାରେ ଏମାନେ ଆର୍ଥିକ ଦୁର୍ଗତି ଭୋଗ କଲେ । ଅଜ୍ଞନତାବଶତଃ ଇଂରେଜମାନେ ଆଦିବାସୀମାନଙ୍କର ସ୍ୱାଧିକାର ଅପହରଣ କରିବା ସଙ୍ଗେ ସଙ୍ଗେ, ସେମାନଙ୍କ ପାରଂପାରିକ ସଂସ୍କୃତିରେ ପରିବର୍ତ୍ତନ ଘଟାଇବା ଚାହିଁଲେ । ଏମାନେ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳକୁ ଭେଦ କରି, ରାସ୍ତାଘାଟ ଉନ୍ମୋଚନ କଲେ ଓ ସ୍କୁଲ ଇତ୍ୟାଦି ପ୍ରତିଷ୍ଠା କଲେ । ଖ୍ରୀଷ୍ଟିଆନ ମିଶନମାନେ ଏହି ସବୁ କାର୍ଯ୍ୟରେ ଅଗ୍ରଣୀ ହେଲେ । ଏହାଦ୍ୱାରା ଆଦିବାସୀମାନଙ୍କର ଉନ୍ନତି ପରିବର୍ତ୍ତେ ନାନା ପ୍ରକାର ଅସୁବିଧା ହିଁ ହେଲା ।

ଏହି ଆଦିବାସୀମାନେ ଅସଂପୃକ୍ତ ଜୀବନ ଯାପନ କଲେ ।

ଅଣଆଦିବାସୀମାନେ ଆଦିବାସୀମାନଙ୍କ ପାଖରେ ପହଞ୍ଚି ଲୁଟ ଚଳାଇବା ଆରମ୍ଭ କଲେ ।

ଜଙ୍ଗଲ ଆଇନ ପାଶ୍ କରାଯାଇ, ଆଦିବାସୀମାନଙ୍କ ଜଙ୍ଗଲ ଉପରେ ଥିବା ପାରମ୍ପରିକ ଅଧିକାରକୁ ବେଆଇନ ଘୋଷିତ କରାଗଲା ।

କିନ୍ତୁ ଜମିଦାର, କଣ୍ଟ୍ରାକ୍ଟର, ବ୍ୟବସାୟୀ ଓ ଧନୀଲୋକେ ଜଙ୍ଗଲ ବ୍ୟବହାର ପାଇଁ ଅବାଧ ଅଧିକାର ପାଇଲେ ।

ଆଦିବାସୀମାନଙ୍କ ଉପରେ ଅଣଆଦିବାସୀମାନଙ୍କ ଅବାଧ ଅତ୍ୟାଚାର ଉପରେ କୌଣସି ଆଇନଗତ କଟକଣା ରହିଲା ନାହିଁ ।

ତେଣୁ ଆଦିବାସୀମାନେ ଅତିଷ୍ଠ ହୋଇ ଉଠିଲେ । ସେମାନଙ୍କ ଭିତରେ ବିଦ୍ରୋହ ଦେଖା ଦେଲା ।

## ସାନ୍ତାଳ ବିଦ୍ରୋହ : ୧୮୫୫

ଏହି ବିଦ୍ରୋହର କାରଣ ସଂପର୍କରେ ଅନୁସନ୍ଧାନ କରି ଜଣା ଯାଉଛି ଯେ, ଧନୀ ଜମିଦାରମାନଙ୍କ ଆଦିବାସୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଫଳରେ ଏ ବିଦ୍ରୋହ ଦେଖା ଦେଇଥିଲା ।

ଇଂରେଜ ସରକାର ଏହାକୁ ନିର୍ମମ ଭାବରେ ଦମନ କଲେ ।

ସ୍ଥାନୀୟ ରାଜକର୍ମଚାରୀମାନେ, ଯେଉଁମାନେ ଆଦିବାସୀମାନଙ୍କ ଚଳଣୀ, ପରଂପରା ଓ ସମସ୍ୟା ସଂପର୍କରେ ସଂପୂର୍ଣ୍ଣ ଅନଭିଜ୍ଞ, ସେମାନେ ଏଭଳି ଏକ ବିଦ୍ରୋହ ଘଟିବ ବୋଲି ମୋଟେ ହେଲେ ଜାଣି ପାରି ନ ଥିଲେ ।

ସାନ୍ତାଳ ବିଦ୍ରୋହର ଅଗ୍ନି ହଠାତ୍ ଜଳି ଉଠିଲା ଓ ସମଗ୍ର ବଙ୍ଗଳା ପ୍ରଦେଶକୁ ଥରାଇ ଦେଇଥିଲା ।

ସାନ୍ତାଳମାନେ ଏହାର ନେତୃତ୍ୱ ଗ୍ରହଣ କରି ଅଦମ୍ୟ ସାହସର ପରିଚୟ ଦେଇଥିଲେ । ଇଂରେଜ ସରକାର ବହୁ ଲୋକଶକ୍ତି କ୍ଷୟକରି, ସାନ୍ତାଳ ବିଦ୍ରୋହ ଆୟତ୍ତ କରିଥିଲେ ।

## ସରଦାରୀ ବିଦ୍ରୋହ : ୧୮୮୭

ଏ ବିଦ୍ରୋହ ରାଞ୍ଚୀ ଓ ରାଞ୍ଚୀ ଉପକଣ୍ଠର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଦେଖା ଦେଇଥିଲା । ବେଠୀ, ସଲାମୀ, ପାଉଣା, ଅପ୍ରତ୍ୟାଶିତ ଭାବରେ ଖଜଣା ବୃଦ୍ଧି ବିରୁଦ୍ଧରେ ଏ ବିଦ୍ରୋହ ଦେଖାଦେଲା ।

କିନ୍ତୁ ସରକାର ଏହାକୁ କଠୋର ନୀତି ପ୍ରୟୋଗ କରି ଦମନ କରିଥିଲେ ।

ଏହି ବିଦ୍ରୋହର ଉଲ୍ଲେଖଯୋଗ୍ୟ ଘଟଣା ହେଲା, ଆଦିବାସୀମାନେ ବହୁ ସଂଖ୍ୟାରେ ମିଶନାରୀମାନଙ୍କ ପ୍ରରୋଚନା ଓ ପ୍ରଲୋଭନରେ ପଡ଼ି ହିନ୍ଦୁଧର୍ମ ତ୍ୟାଗ କରି ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରିଥିଲେ ।

## ବିର୍ସା ବିଦ୍ରୋହ : ୧୮୯୫

ଏହି ପ୍ରସିଦ୍ଧ ବିଦ୍ରୋହ ଆଦିବାସୀ ନେତା ବିର୍ସା ମୁଣ୍ଡାଙ୍କ ଅଧ୍ୟକ୍ଷତାରେ ସଂଘଟିତ ହୋଇଥିଲା । ମୁଣ୍ଡା ଜାତିର ଲୋକମାନେ ଏହି ବିଦ୍ରୋହରେ ଅଧିକ ସଂଖ୍ୟାରେ ଅଂଶ ଗ୍ରହଣ କରିଥିଲେ । ମୁଣ୍ଡାମାନେ (କ) ହିନ୍ଦୁ ଜମିଦାର (ଖ) ସୁଧଖୋର ସାହୁକାର ଏବଂ (ଗ) ଖ୍ରୀଷ୍ଟିଆନ ମିଶନାରୀମାନଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ ।

ଏହି ବିଦ୍ରୋହକୁ ମଧ୍ୟ ଆୟତ୍ତ କରା ଯାଇଥିଲା ।

କିନ୍ତୁ ଏହି ବିଦ୍ରୋହ ପରେ ଆଦିବାସୀମାନେ ଶାସନ ଓ ଆର୍ଥିକ କ୍ଷେତ୍ରରେ କିଛିଟା ସୁବିଧା ହାସଲ କଲେ ।

## କୋୟା ବିଦ୍ରୋହ : ୧୮୭୯

ଆଲ୍ଲୁରି ସୀତାରାମ ରାଜୁ ଏହାର ନେତୃତ୍ୱ ଗ୍ରହଣ କରିଥିଲେ ।

ଏହି ବିଦ୍ରୋହ ଜଙ୍ଗଲ ଆଇନ ବିରୁଦ୍ଧରେ ଓ ଧନୀ ଜମିଦାରମାନଙ୍କ ବେଠୀ ପ୍ରଥା ବିରୁଦ୍ଧରେ ଉଦ୍ଦିଷ୍ଟ ଥିଲା ।

ଭାରତୀୟ ଜାତୀୟ କଂଗ୍ରେସର ଅସହଯୋଗ ଆନ୍ଦୋଳନ ସଙ୍ଗରେ ଏହାର ସମ୍ପର୍କ ଥିଲା ବୋଲି ବୁଝା ଯାଇଥାଏ । କୋୟାମାନେ ଗରିଲା ଯୁଦ୍ଧ ପ୍ରଣାଳୀ ପ୍ରୟୋଗ କରି ପ୍ରତିଷ୍ଠିତ ସରକାରଙ୍କୁ ଆତଙ୍କିତ କରିଥିଲେ ।

ପରିଶେଷରେ ଆଲ୍ଲୁରି ସୀତାରାମ ପୁଲିସ ହାତରେ ନିହତ ହୋଇଥିଲେ ।

ଏତଦ୍ ବ୍ୟତୀତ ଆହୁରି ଅନେକ ଗ୍ରୋଷ୍ଠ ବଡ଼ ବିଦ୍ରୋହ ସଂଘଟିତ ହୋଇଥିଲା ।

ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଇଂରେଜ ସରକାର, ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ସ୍ୱତନ୍ତ୍ର ଶାସନ ବ୍ୟବସ୍ଥାର ଆବଶ୍ୟକତା ଉପଲବ୍ଧି କଲେ । ରାଜମହଲ ପାର୍ବତ୍ୟ ଅଞ୍ଚଳର ପାହାଡ଼ିଆ ଅଧିବାସୀମାନେ ଜମିଦାରମାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବାରୁ ଅଗଷ୍ଟସ୍ କ୍ଲେଭଲାଣ୍ଡ ( Augustus Cleveland )ଙ୍କୁ ଏ ଅବସ୍ଥା ସମ୍ଭାଳିବା ଉଦ୍ଦେଶ୍ୟରେ ପଠା ଯାଇଥିଲା । ତାଙ୍କ ଅନୁସନ୍ଧାନର ଫଳାଫଳ ପରିବର୍ତ୍ତିତ ଶାସନ ପ୍ରଣାଳୀର ଭିତ୍ତି ସ୍ଥାପନ କରିଥିଲା । ସମଗ୍ର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ 'ତଫସିଲଭୁକ୍ତ ଜିଲ୍ଲା'ମାନଙ୍କରେ ବିଭକ୍ତ କରାଗଲା । ତାପରେ 'ତଫସିଲଭୁକ୍ତ ଜିଲ୍ଲା ଆକ୍ଟ : ୧୮୭୪' ଅନୁଯାୟୀ ଏ ସବୁ ଜିଲ୍ଲା ଶାସିତ ହେଲା ।

ଏହାପରେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ମୁଣ୍ଡ ଟେକିଲା ।

ଆଦିବାସୀ ସଂପ୍ରଦାୟ ଯେମିତି ଏହି ସ୍ୱାଧୀନତା ଆନ୍ଦୋଳନକୁ ସମର୍ଥନ ନ କରନ୍ତି ଓ ଏହି ଆନ୍ଦୋଳନରୁ ଦୂରେଇ ରହନ୍ତି, ସେଥିପାଇଁ ଇଂରେଜ ସରକାର ସଜାଗ ରହିଲେ ।

ଭାରତୀୟ ଅନୁଶାସନ ୧୯୩୫ର ୯୧ ଓ ୯୨ ଧାରାରେ ବ୍ୟବସ୍ଥା କରାଗଲା ଯେ, ଆଦିବାସୀ ଅଧ୍ୟୁଷିତ ଅଞ୍ଚଳମାନ ଇଂରେଜ ସରକାରଙ୍କ ପ୍ରତ୍ୟକ୍ଷ ଶାସନାଧୀନ ହେବ ଏବଂ ଶାସନ ବିଧାୟକ ସଭାର କୌଣସି ନିୟମ କାନୁନ ଏହି ଅଞ୍ଚଳମାନଙ୍କ ଉପରେ ଲାଗୁ ହେବନାହିଁ ।

ମାନ୍ଦ୍ରାଜ, ବମ୍ବେ, ବିହାର, ମଧ୍ୟପ୍ରଦେଶ, ଆସାମ ଓ ଓଡ଼ିଶାର ପ୍ରାଦେଶିକ ଶାସନ ବିଧାୟକ ସଭାରେ ଆଦିବାସୀ ସଂପ୍ରଦାୟର ପ୍ରତିନିଧିମାନଙ୍କ ନିମନ୍ତେ ସଂରକ୍ଷିତ ଆସନ ବ୍ୟବସ୍ଥା କରାଗଲା ।

## ସ୍ୱାଧୀନତା ହାସଲ : ପୂର୍ବ ଓ ପରବର୍ତ୍ତୀ ଅବସ୍ଥା ଓ ସଂବିଧାନ

ସ୍ୱାଧୀନତା ଆନ୍ଦୋଳନ ସମୟରୁ ହିଁ ପ୍ରବୀଣ ରାଜନୀତିଜ୍ଞମାନେ ସାମାଜିକ ସଂସ୍କାର ଓ ସମାଜ ମଙ୍ଗଳ ଉଦ୍ଦେଶ୍ୟରେ କାର୍ଯ୍ୟ କରୁଥିଲେ । ରାଜା ରାମମୋହନ ରାୟ ଓ ଠକରବାପା ଏମାନଙ୍କ ମଧ୍ୟରେ ଅନ୍ୟତମ ।

ଠକରବାପା ଆଦିବାସୀମାନଙ୍କୁ ଗିରିଜନ ନାମରେ ନାମିତ କରି ସେମାନଙ୍କ ସମସ୍ୟା ପ୍ରତି ସମଗ୍ର ଜାତିର ଦୃଷ୍ଟି ଆକର୍ଷଣ କରିଥିଲେ ।

ଏହା ଭାରତୀୟ ସମ୍ବିଧାନର ଅନୁନ୍ନତ ଜାତିମାନଙ୍କର ମଙ୍ଗଳ ସାଧନ ନିମନ୍ତେ ସ୍ୱତନ୍ତ୍ର ନିୟମ ପ୍ରଣାଳୀର ଭିତ୍ତି ସ୍ଥାପନ କରିଥିଲା ।

୧୯୩୭ ମସିହାରେ ସ୍ୱାୟତ୍ତ ଶାସନ ବ୍ୟବସ୍ଥା କେନ୍ଦ୍ର ଓ ପ୍ରାଦେଶିକ ସ୍ତରରେ ଲାଗୁ ହେଲା ଓ ଲୋକ ପ୍ରତିନିଧିମାନେ ଶାସନରେ ଅଂଶ ଗ୍ରହଣ କଲେ । ଆଦିବାସୀ-ମାନଙ୍କ ଅବସ୍ଥା ସମ୍ପର୍କରେ ଅନୁଧ୍ୟାନ କରିବା ନିମନ୍ତେ ବିହାର, ଓଡ଼ିଶା, ବମ୍ବେ ଓ ମାନ୍ଦ୍ରାଜରେ କମିଟିମାନ ଗଢ଼ାଗଲା । ଏହି କମିଟି, ଶାସନ ବ୍ୟବସ୍ଥାରେ ସଂଶୋଧନ ପ୍ରସ୍ତାବମାନ ଦେଲେ । କିନ୍ତୁ ହଠାତ୍ ଦ୍ୱିତୀୟ ବିଶ୍ୱଯୁଦ୍ଧ ପ୍ରାରମ୍ଭରେ କଂଗ୍ରେସ ପ୍ରତିନିଧିମାନେ ଶାସନ କ୍ଷେତ୍ରରୁ ଇସ୍ତଫା ଦେବାରୁ ଏହି ସଂଶୋଧନ ପ୍ରସ୍ତାବମାନ କାର୍ଯ୍ୟକାରୀ ହୋଇ ପାରିଲା ନାହିଁ ।

ସ୍ୱାଧୀନତା ପ୍ରାପ୍ତି ପରେ ଯେଉଁ ଭାରତ ସମ୍ବିଧାନ ଗୃହୀତ ହେଲା, ଆଦିବାସୀମାନଙ୍କ ଶାସନ ଓ କଲ୍ୟାଣ ସମ୍ପର୍କରେ ନିର୍ଦ୍ଦିଷ୍ଟ ବ୍ୟବସ୍ଥା ରହିଲା ।

ସମ୍ବିଧାନର ୧୬ ଧାରାରେ ଶାସନ କ୍ଷେତ୍ରରେ ନିଯୁକ୍ତି ପାଇଁ ଆଦିବାସୀମାନଙ୍କୁ ସମାନ ସୁବିଧା ଓ ସୁଯୋଗ ଦିଆଯାଇଛି । ସମ୍ବିଧାନର ୧୭ ଧାରାରେ ଅସ୍ପୃଶ୍ୟତା ଏକ ଅପରାଧ ବୋଲି କୁହାଯାଇଛି । ୧୯ ଧାରାରେ ମତ ପ୍ରକାଶ ପାଇଁ ସ୍ୱାଧୀନତା ପ୍ରଦାନ ସଙ୍ଗେ ସଙ୍ଗେ ଜନସାଧାରଣଙ୍କୁ ସଂଘ ଗଠନ, ନିଃସଙ୍କୋଚ ଚଳପ୍ରଚଳ, ଦେଶର ଯେ କୌଣସି ସ୍ଥାନରେ ବସବାସ ସ୍ଥାପନ, ଅବାଧ ବାଣିଜ୍ୟ ଓ ବ୍ୟକ୍ତିଗତ ସମ୍ପତ୍ତି ଉପରେ ଅଧିକାର ସାବ୍ୟସ୍ତ କରାଯାଇଛି ।

ସମ୍ବିଧାନର ୨୩ ଧାରାରେ ଲୋକ ଅତ୍ୟାଚାର ଓ ବେଠି ଉପରେ ନିଷେଧାଜ୍ଞା ରହିଛି ।

ସମ୍ବିଧାନର ୨୫ ଧାରା ପ୍ରତିଟି ମଣିଷର ବିବେକ ବିଚାର ସ୍ୱଚ୍ଛନ୍ଦ ବାଣିଜ୍ୟ ବ୍ୟବସାୟ ଓ ଧର୍ମ ଉପରେ ସ୍ୱାଧୀନତା ପ୍ରଦାନ କରିଛି ।

ସମ୍ବିଧାନର ୨୯ ଧାରାରେ ସଂଖ୍ୟା ଲଘୁ ସମ୍ପ୍ରଦାୟର ଭାଷା, ଲିପି ଓ ସଂସ୍କୃତି ରକ୍ଷା ପାଇଁ ନିର୍ଦ୍ଦେଶ ରହିଛି ।

ସମ୍ବିଧାନର ଷଷ୍ଠ ଭାଗରେ ବିହାର, ମଧ୍ୟପ୍ରଦେଶ ଏବଂ ଓଡ଼ିଶାରେ ଆଦିବାସୀ ମଙ୍ଗଳ ନିମନ୍ତେ ଜଣେ ଲେଖାଏଁ ମନ୍ତ୍ରୀ ରହିବେ ବୋଲି ବ୍ୟବସ୍ଥା କରାଯାଇଛି ।

ବର୍ତ୍ତମାନ କେନ୍ଦ୍ର ଓ ପ୍ରାଦେଶିକ ଶାସନ କ୍ଷମତାରେ ଥିବା ଶାସକମାନେ ସଂବିଧାନର ଏ ସମସ୍ତ ମୂଳନୀତିକୁ କାର୍ଯ୍ୟକାରୀ କରାଇ ଅଛନ୍ତି । ପଞ୍ଚବାର୍ଷିକ ଯୋଜନା ମାଧ୍ୟମରେ

ଏହି ଆଦିବାସୀ ସଂପ୍ରଦାୟର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ବ୍ୟବସ୍ଥା ଅବଲମ୍ବନ କରାଯାଉଛି ।

ଆଶା କରାଯାଉଛି, ଭବିଷ୍ୟତରେ ଆଦିବାସୀମାନେ ସ୍ୱାଧୀନତାର ସମସ୍ତ ସୁଫଳ ଲାଭ କରିବାରେ ସମର୍ଥ ହେବେ ।

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ମହାତ୍ମାଗାନ୍ଧୀଙ୍କର ହରିଜନ ଆନ୍ଦୋଳନ ରାଷ୍ଟ୍ରୀୟ ଓ ସାମାଜିକ ଜୀବନରେ ଗଭୀର ପ୍ରଭାବ ବିସ୍ତାର କରିଛି । ଦେଶର ମୁକ୍ତି ସଂଗ୍ରାମ, ସ୍ୱାଧୀନତା ପ୍ରାପ୍ତି ଓ ଗଣତନ୍ତ୍ର ଶାସନ ପ୍ରବର୍ତ୍ତନ ଫଳରେ ହରିଜନ ଓ ଆଦିବାସୀମାନଙ୍କ କଥା ସ୍ୱତନ୍ତ୍ର ଭାବରେ ବିଚାର କରାଗଲା । ଦେଶର ସାଂସ୍କୃତିକ କ୍ଷେତ୍ରରେ ଏହାର ପ୍ରଭାବ ପଡ଼ିବା ସ୍ୱତଃସିଦ୍ଧ । ତେଣୁ ଦେଶର ସାହିତ୍ୟ କ୍ଷେତ୍ରରେ ମଧ୍ୟ ଏହି ଆଦିବାସୀ-ଚେତନା ପ୍ରକଟିତ ହେବା ସମ୍ପୂର୍ଣ୍ଣ ସ୍ୱାଭାବିକ । ଏତଦ୍ୱାରା ଆଦିବାସୀମାନେ ଉପକୃତ ହେବା ସଙ୍ଗେ ସଙ୍ଗେ ଆମ ଦେଶର ସାହିତ୍ୟ ମଧ୍ୟ ଅଧିକ ବିଭବଶାଳୀ ଓ ଐଶ୍ୱର୍ଯ୍ୟ ମଣ୍ଡିତ ହେବାର ସମ୍ଭାବନା ରହିଛି ।

# : କ୍ରମ କ୍ଷୟିଷ୍ଣୁ ସଂସ୍କୃତି :

ଆଦିବାସୀମାନଙ୍କର କ୍ରମ କ୍ଷୟିଷ୍ଣୁ ସଂସ୍କୃତି ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ପ୍ରଥମେ 'ସଂସ୍କୃତି' ଶବ୍ଦର ଅର୍ଥ ବୁଝିବା ଆବଶ୍ୟକ । ପୁଣି 'ଆଦିବାସୀ ସଂସ୍କୃତି' କଣ ତାହା ଉତ୍ତମରୂପେ ଉପଲବ୍ଧି କରିବା ଉଚିତ ହେବ ।

ସଂସ୍କୃତି :

'ସଂସ୍କୃତି' ଶବ୍ଦକୁ ଏକ ବ୍ୟାପକ ଅର୍ଥରେ ପ୍ରୟୋଗ କରି ଯାଇଥାଏ ।

କେହି କେହି ସଭ୍ୟତା ( Civilisation )କୁ ସଂସ୍କୃତି ବୋଲି ପ୍ରକାଶ କରିଥାନ୍ତି । ଆଉ କେହି କେହି ସଂସ୍କୃତି ଶବ୍ଦକୁ ଇଂରାଜୀ ପ୍ରତିଶବ୍ଦ କଲ୍‌ଚର୍ (Culture) ସଙ୍ଗେ ଯୋଡ଼ି ଦିଅନ୍ତି । ଇଂରାଜୀ କଲ୍‌ଚର୍ ଶବ୍ଦର ବୈଦିକ ପ୍ରତିଶବ୍ଦ ହେଲା 'କୃଷ୍ଟି' । ଏହା 'ସମୁଦାୟ କୃଷକ ଦଳ'କୁ ବୁଝାଇଥାଏ । କିନ୍ତୁ ସଂସ୍କୃତି ଶବ୍ଦ, ସଭ୍ୟତା ଓ କୃଷ୍ଟି ଠାରୁ ମଧ୍ୟ ବ୍ୟାପକ ମନେହୁଏ ।

ସମାଜ ବିଜ୍ଞାନୀ ଟାଇଲର୍ କହନ୍ତି—ଜ୍ଞାନ, ବିଶ୍ୱାସ, କଳା, ଶିଳ୍ପ, ନୀତି, ଆଇନ କାନୁନ, ପ୍ରଥା, ଅନୁଷ୍ଠାନ, ଅଭ୍ୟାସ ଇତ୍ୟାଦି ଯାବତୀୟ କାର୍ଯ୍ୟ ହିଁ ସାମାଜିକ ମଣିଷର ସଂସ୍କୃତି ଜ୍ଞାପକ ।

ସମାଜ ବିଜ୍ଞାନୀ ହର୍ଟନ କହନ୍ତି, 'ଯାହା କିଛି ଆମେ ସମାଜରୁ ଶିକ୍ଷା କରୁ ଓ ଆଦାନ ପ୍ରଦାନ କରୁ, ସେ ସକଳର ପ୍ରକାଶ ହିଁ ସଂସ୍କୃତି ।

ଆଉ କେହି କେହି ମତ ଦିଅନ୍ତି ଯେ, ସାମାଜିକ ମଣିଷର ନୃତ୍ୟ, ଗୀତ, ଶିଳ୍ପ, ସ୍ଥାପତ୍ୟ ହିଁ ସଂସ୍କୃତି ।

ଏହିପରି ନାନା ପ୍ରକାର ଅର୍ଥ ସତ୍ତ୍ୱେ, ଏ କଥା ନିଶ୍ଚିତ ଯେ, ସଂସାରରେ ମନୁଷ୍ୟ ଜାତିର ହିଁ ସଂସ୍କୃତି ରହିଛି । ଅନ୍ୟ ଜାତୀର ସଂସ୍କୃତି ନାହିଁ । ମନୁଷ୍ୟ ହିଁ ସଂସ୍କୃତିର ସ୍ରଷ୍ଟା । ତେଣୁ ମନୁଷ୍ୟ ଜାତି ଜୀବନ ଧାରଣ କରିବା ପାଇଁ ପ୍ରକୃତି ଓ ପରିବେଷ୍ଟନୀ ସଙ୍ଗରେ ଅନବରତ ଯେଉଁ ଚେଷ୍ଟା କରେ, ତାହାହିଁ ତାର ସଂସ୍କୃତି । ଅନ୍ୟ ଅର୍ଥରେ କହିବାକୁ ଗଲେ, ଜୀବନଯାପନକୁ ସହଜତର କରିବା ହିଁ ସଂସ୍କୃତିର ବାସ୍ତବ ମୂଳଭିତ୍ତି ।

ପୃଥିବୀର ସକଳ ଜୀବ ପ୍ରକୃତି ଦ୍ୱାରା ନିୟନ୍ତ୍ରିତ ହୋଇଥାନ୍ତି । କିନ୍ତୁ ମଣିଷ ପ୍ରକୃତିର ନିୟମ ବୁଝି ତାକୁ ନିଜର ବ୍ୟବହାରରେ ଲଗାଇବାକୁ ଚେଷ୍ଟା କରିଥାଏ । ନିଜ ଜୀବନଯାପନକୁ ସହଜ, ସରସ ଓ ସୁନ୍ଦର କରିବାକୁ ସେ ନାନାବିଧ ଉପାୟ

ଅବଲମ୍ବନ କରିଥାଏ । ମଣିଷ ଜାତିର ଇତିହାସ ଅଧ୍ୟୟନ କଲେ ଏ କଥା ସୁସ୍ପଷ୍ଟ ହେବ ଯେ, ସେ ଜୀବନର ସ୍ତରେ ସ୍ତରରେ ପ୍ରକୃତି ସହିତ ସଂଗ୍ରାମ କରି ଆସିଛି । ଏହି ସଂଗ୍ରାମରେ ସେ ଆସ୍ତେ ଆସ୍ତେ ବିଜୟୀ ହୋଇ ନିଜ ଜୀବନ ଓ ଜୀବିକାକୁ କ୍ରମେ ସୁନ୍ଦର ଓ ସରସ କରି ଆସିଛି ।

ଜୀବନ ଓ ଜୀବିକାକୁ ସୁନ୍ଦର ଓ ସରସ କରିବା ପାଇଁ ସେ ଯେଉଁ ଯେଉଁ ରୀତି, ନୀତି ଓ ମାର୍ଗ ଅନୁସରଣ କରି ଆସିଛି, ତାର ସାମଗ୍ରିକ ରୂପହିଁ ସଂସ୍କୃତି ।

ତେଣୁ ସଂସ୍କୃତି କହିଲେ ଆମେ ତିନୋଟି ବିଷୟ ବୁଝୁ । ସେ ଗୁଡ଼ିକ ହେଲା (୧) ମନୁଷ୍ୟ ଯେଉଁଠି ଆଉନା କାହିଁକି, ସେଇଠି ତାର ଜୀବନ-ସଂଗ୍ରାମର ଚିତ୍ର; (୨) ତାର ସାମାଜିକ ବିଧି ବ୍ୟବସ୍ଥା ଓ (୩) ସୌନ୍ଦର୍ଯ୍ୟ ବୋଧ ।

ଏହି ସଂସ୍କୃତିକୁ ପ୍ରାଚୀନ, ମଧ୍ୟଯୁଗୀୟ ଓ ଆଧୁନିକ ଏହି ତିନି ପର୍ଯ୍ୟାୟରେ ବିଭକ୍ତ କରାଯାଇଥାଏ ।

## ଆଦିବାସୀ ସଂସ୍କୃତି

ଆଦିବାସୀମାନେ ଯେ ଏ ଦେଶର ଆଦିମ ଅଧିବାସୀ ଏଥିରେ ମତଦ୍ୱୈଧର ଅବକାଶ ନାହିଁ । ଏବେ ଜଣା ପଡ଼ିଛି ଯେ, ଆର୍ଯ୍ୟ ଓ ଦ୍ରାବିଡ଼ ସଭ୍ୟତା ପୂର୍ବରୁ ଭାରତରେ ଆଦିବାସୀ ସଭ୍ୟତା ଓ ସଂସ୍କୃତି ବିଦ୍ୟମାନ ଥିଲା । ହରପ୍ପା ଓ ମହେଞ୍ଜୋଦାରୋରେ ଏହାର ପ୍ରମାଣ ମିଳିଛି ।

ବର୍ତ୍ତମାନ ପରି ସୁସଭ୍ୟ ଯୁଗର ଆଦିବାସୀମାନେ ବଣଜଙ୍ଗଲରେ ବିଭିନ୍ନ ଭାବରେ ବାସ କରୁଥିଲେ । ପ୍ରକୃତି କୋଳରେ ଜନ୍ମହୋଇ ସେହି ପ୍ରକୃତି ଉପରେ ନିର୍ଭର କରି କାଳ ଯାପନ କରୁଥିଲେ । ସେମାନଙ୍କ ଜୀବନ ଯାପନ ପ୍ରଣାଳୀ, ଅପେକ୍ଷାକୃତ ସଭ୍ୟ ଓ ଉନ୍ନତ ଆର୍ଯ୍ୟମାନଙ୍କ ଠାରୁ ଭିନ୍ନ ଥିଲା । ସେମାନେ ଭିନ୍ନ ଭାବରେ ଚଳୁଥିଲେ, ଭିନ୍ନ ଧରଣର ବିଶ୍ୱାସ ସ୍ଥାପନ କରୁଥିଲେ ଓ ଜୀବନକୁ ସରସ ସୁନ୍ଦର କରିବା ନିମନ୍ତେ ନିଜସ୍ୱ କାର୍ଯ୍ୟ ପ୍ରଣାଳୀକୁ ଅନୁସରଣ କରୁଥିଲେ । ସେମାନଙ୍କ ଚିନ୍ତା ଓ ଚେତନାରେ ଭିନ୍ନ ସ୍ୱର ଥିଲା । ସେମାନଙ୍କ ଘର, ପରିବାର, ସମାଜ ଓ ସାମାଜିକ ବିଧି ବ୍ୟବସ୍ଥା ସ୍ୱତନ୍ତ୍ର ଧରଣର ଥିଲା ।

କାଳକ୍ରମେ ଏମାନେ ଅପେକ୍ଷାକୃତ ସଭ୍ୟ ଶିକ୍ଷିତ ମଣିଷମାନଙ୍କ ସଂସ୍ପର୍ଶରେ ଆସିଲେ ଓ ଅନେକ ନୂଆ କଥା ଦେଖିଲେ ଓ ଶିଖିଲେ । ତେଣୁ ବହୁଦିନର ପୁରୁଣା ଚଳଣୀ, ରୀତିନୀତି ଓ ଚିନ୍ତାଧାରାରେ ଆସ୍ତେ ଆସ୍ତେ ପରିବର୍ତ୍ତନ ଘଟିବାକୁ ଲାଗିଲା ।

# ଓଡ଼ିଆ ସାହିତ୍ୟରେ ନୂତନ ଦିଗନ୍ତ

ଓ ଓଡ଼ିଶାର ସାରଳାଦାସ, ବଳରାମ ଦାସ (ଦାଣ୍ଡି ରାମାୟଣ-ଅଯୋଧ୍ୟାକାଣ୍ଡ), ଉପେନ୍ଦ୍ର ଭଞ୍ଜ (ଲାବଣ୍ୟବତୀ, ବୈଦେହୀଶ ବିଳାସ), ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା (ଲଳିତ ଲୋଚନା) ପ୍ରମୁଖ କେତେକଣ କବି ଏହି ଆଦିବାସୀମାନଙ୍କୁ ଶବର, ବ୍ୟାଧ, ନିଷାଦ, କିରାତ, କନ୍ଧ ପ୍ରଭୃତି ରୂପରେ ନିଜ ରଚନାରେ ଉଲ୍ଲେଖ କରି ଅଛନ୍ତି ।

ସ୍ୱର୍ଗୀୟ ଗୋପାଳ ବଲ୍ଲଭ ଦାସ ଏହି ଆଦିବାସୀ ଜୀବନ ଉପରେ ଭୀମା ଭୂୟାଁ ଉପନ୍ୟାସ ଲେଖିଛନ୍ତି । ଔପନ୍ୟାସିକ ଗୋପୀନାଥ ମହାନ୍ତି ଦାଦିବୁଢ଼ା, ପରଜା, ଅମୃତର ସନ୍ତାନରେ ଆଦିବାସୀ ଚରିତ୍ରମାନଙ୍କୁ ସୃଷ୍ଟି କରିଛନ୍ତି । ପରଶୁରାମ ମୁଣ୍ଡ (ମୂଳିଆ ପିଲା), କାହ୍ନୁଚରଣ ମହାନ୍ତି (ବନ ଗହନର ତଳେ), ଭାଗୀରଥି ନେପାକ (ରାବଣର କେକୁର ରାଣି), ବଳରାମ ମିଶ୍ର (ଡୁମ୍ବା) ପ୍ରମୁଖ ଲେଖକମାନେ ଆଦିବାସୀ ଜୀବନର ଚିତ୍ର ଦେବାକୁ ଆଗେଇ ଆସିଛନ୍ତି । ଏତଦ୍ଦ୍ୱାରା ଆମ ସାହିତ୍ୟରେ ଏକ ନୂତନ ଦିଗନ୍ତ ଉନ୍ମୋଚିତ ହୋଇଛି ।

ଯେତେ ସଜାଗ ରହିଲେ ମଧ୍ୟ ଇତିହାସ ଓ ସଂସ୍କୃତିର ବିବର୍ତ୍ତନ ଧାରାକୁ ଅଟକାଇ ରଖିହୁଏ ନାହିଁ ।

ସଭ୍ୟତାର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସଂସ୍କୃତିରେ ବି ପରିବର୍ତ୍ତନ ଦେଖାଦିଏ । ଚଳଣୀ, କଥାଭାଷା ଆଦିର ବ୍ୟବହାରରେ ପରିବର୍ତ୍ତନର ଛିଟିକା ପଡ଼େ । ତେଣୁ ସମାଜ ଓ ସଂପ୍ରଦାୟର ସ୍ୱତନ୍ତ୍ରତାକୁ ନିରୋଳା ରଖି ହୁଏନାହିଁ ।

ମନେ ରଖିବାକୁ ହେବ, ଏକ ସ୍ୱତନ୍ତ୍ର ସଂପ୍ରଦାୟର ଲୋକମାନେ ଜନସମାଗମ ଠାରୁ ଦୂରରେ, ନିରୋଳାରେ ସ୍ୱତନ୍ତ୍ର ଓ ବିଚ୍ଛିନ୍ନ ଜୀବନ ଯାପନ କରୁଥିଲେ ମଧ୍ୟ, ସେମାନେ ଚିରକାଳ ପର୍ଯ୍ୟନ୍ତ ନିଜର ପାରମ୍ପରିକ ସଭ୍ୟତା ଓ ସ୍ୱତନ୍ତ୍ରତାକୁ ଅପରିବର୍ତ୍ତିତ ଭାବରେ ଧରି ରଖି ପାରିବାକୁ ସମର୍ଥ ହୁଅନ୍ତି ସତ କିନ୍ତୁ ଚିରଦିନ ପାଇଁ ସେହି ସଂସ୍କୃତିର ବୈଶିଷ୍ଟ୍ୟକୁ ନିରୋଳା ରଖି ପାରନ୍ତି ନାହିଁ । ସମୟର ପ୍ରଭାବ ତାକୁ ମିଶ୍ରିତ କରେ ।

ଏ ସଂପର୍କରେ ଗୋଟିଏ ଦୁଇଟି ଉଦାହରଣ ଦେବା ଅପ୍ରାସଙ୍ଗିକ ହେବନାହିଁ ।

ପ୍ରଥମେ କାଙ୍କଡ଼ ଚାଷ ଆଦିବାସୀମାନଙ୍କର ଏକଚାଟିଆ ବ୍ୟବସାୟ ଥିଲା । ବ୍ରାହ୍ମଣମାନେ କଦଳୀ ଚାଷ କରିବାକୁ ଅମଙ୍ଗ ହେଉଥିଲେ । ସମୟର ପ୍ରଭାବରେ ବର୍ତ୍ତମାନ ଅଣଆଦିବାସୀମାନେ କାଙ୍କଡ଼ ଚାଷ କଲେଣି । ବ୍ରାହ୍ମଣମାନେ ଖାଲି କଦଳୀ ଚାଷ

କାହିଁକି, କୁକୁଡ଼ା ବ୍ୟବହାର କରିବାକୁ ବି' ପଶ୍ଚାତ୍ ନାହାନ୍ତି । ବର୍ତ୍ତମାନ ସବର୍ଣ୍ଣ-ଅସବର୍ଣ୍ଣ ବିବାହ ଚାଲିଛି । ଖାଲି ସେତିକି ନୁହେଁ, ହିନ୍ଦୁ ଓଡ଼ିଆ ପୁଅ ଆମେରିକା, ଇଂଲଣ୍ଡ ଦେଶକୁ ଯାଇ ୟୁରୋପୀୟ କନ୍ୟାକୁ ବଧୂରୂପେ ନିଜ ଘରକୁ ଆଣୁଛି ।

ବିଜ୍ଞାନ ପୃଥିବୀର ଦୂରତାକୁ କମାଇ ଦେଇଛି ।

ଶିଳ୍ପାଞ୍ଚଳମାନ ପ୍ରତିଷ୍ଠା ହେବା ଫଳରେ ବିଭିନ୍ନ ଦେଶ, ଜାତି, ଧର୍ମ ଓ ସଂପ୍ରଦାୟର ଲୋକମାନେ ସହାବସ୍ଥାନ ସୁଯୋଗ ଲାଭ କରି ପାରୁଛନ୍ତି । ଗୋଟିଏ ଜାତି, ଧର୍ମ ଓ ଦେଶର ଲୋକ ଅନ୍ୟ ଏକ ଜାତି, ଧର୍ମ ଓ ଦେଶର ଲୋକ ସଙ୍ଗରେ ମିଳାମିଶା କରି ତାର ସବୁ କଥା ଜାଣିବାର ସୁବିଧା ପାଉଛି । ଏତଦ୍ୱାରା ଚଳଣୀରେ ପରିବର୍ତ୍ତନ ଘଟୁଛି ।

ବେଦର ସୃଷ୍ଟି କାଳ ଓ ଇତିହାସ ରଚନା କାଳ ମଧ୍ୟରେ ସହସ୍ର ବର୍ଷର ବ୍ୟବଧାନ ରହିଛି । ତେଣୁ ଭାରତକୁ କେଉଁ କେଉଁ ଜାତି ଓ ଧର୍ମର ଲୋକ ବାହାରୁ ଆସିଲେ, ପୁଣି ସେମାନେ ଆସି ପହଞ୍ଚିବା ପୂର୍ବରୁ ଆଉ କେଉଁ କେଉଁ ଜାତିର ଲୋକ ଭାରତ ବର୍ଷରେ ଅବସ୍ଥାନ କରୁଥିଲେ, ତାହା ସଠିକ ଭାବରେ ନିର୍ଣ୍ଣୟ କରିବା ଅତୀବ କଷ୍ଟକର ବ୍ୟାପାର । ପୁଣି ଏବେ ଗବେଷକମାନେ ମତ ପ୍ରକାଶ କରୁଛନ୍ତି ଯେ, ଆର୍ଯ୍ୟମାନେ ବାହାରୁ ଭାରତକୁ ଆସି ନାହାନ୍ତି । ବରଂ ସେମାନଙ୍କ ଆଦି ବାସସ୍ଥାନ ପୁଣ୍ୟ ଭାରତଭୂମି ଅଟେ । ଏହି ଦେଶର ଆର୍ଯ୍ୟମାନେ ପୃଥିବୀର ସ୍ଥାନକୁ ଯାଇ ଆର୍ଯ୍ୟ ସଭ୍ୟତାର ମୂଳଦୁଆ ପକାଇଲେ । ଏହା ଯଦି ପ୍ରମାଣିତ ହୁଏ, ତାହାହେଲେ ପୃଥିବୀର ଇତିହାସ ବଦଳି ଯିବ । ଆମେ ଯେ ପୁରୁଷାନୁକ୍ରମେ ଏକ ଭୁଲ ଇତିହାସ ପଢ଼ି ଆସିଲୁ ତାହାହିଁ ସାବ୍ୟସ୍ତ ହେବ । କିନ୍ତୁ କଥା ହେଲା, ଏଥିପାଇଁ ପ୍ରାମାଣିକ ତଥ୍ୟ ଆବଶ୍ୟକ । ଖାଲି ମୁହଁରେ କହିଲେ ଚଳିବ ନାହିଁ ।

ଏ ସମ୍ପର୍କରେ ବୌଦ୍ଧ ସଂପ୍ରଦାୟଭୁକ୍ତ ବଜ୍ରଯାନ ସିଦ୍ଧମାନଙ୍କ ଦ୍ୱାରା ବିରଚିତ 'ଚର୍ଯ୍ୟା ପଦାବଳୀ' ଆଲୋଚନା କଲେ ଜଣାଯିବ ଯେ, ଉକ୍ତ ପଦାବଳୀରେ ସୂକ୍ଷ୍ମ ଡମ୍ବ ଓ ପାହାଡ଼ୀ ଶବରମାନଙ୍କ କଥା ଉଲ୍ଲେଖ ଅଛି । ଏହି ଚର୍ଯ୍ୟା ପଦମାନ ସପ୍ତମରୁ ଦଶମ ଶତାବ୍ଦୀ ଭିତରେ ରଚିତ ହୋଇଥିଲା । ଓଡ଼ିଶାର କାହ୍ନୁପା ଅନେକ ଗୁଡ଼ିଏ ଚର୍ଯ୍ୟାପଦର ପ୍ରସିଦ୍ଧ ଲେଖକ । ତେଣୁ ଖ୍ରୀଷ୍ଟିୟ ସପ୍ତମ ଶତାବ୍ଦୀ ଠାରୁ ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ଯେ, ଓଡ଼ିଶାରେ ଡମ୍ବ ଓ ଶବରମାନେ ବହୁ ସଂଖ୍ୟାରେ ବସବାସ କରୁଥିଲେ, ଏହା ସ୍ୱତଃ ପ୍ରମାଣିତ । ପୁଣି ଏହି ସଂପ୍ରଦାୟ ଭିତରୁ ଅନେକେ ଯେ ଧର୍ମ ଜଗତର ସିଦ୍ଧ ପୁରୁଷ ଆଖ୍ୟା ଲାଭ କରିଥିଲେ, ଏଥିରେ ମତଦ୍ୱୈଧର ଅବକାଶ ନାହିଁ । ପୁଣି ଏହି ଆଦିବାସୀ ସଂପ୍ରଦାୟର ଲୋକମାନେ ଯେ ଉଚ୍ଚ-

କୋଟିର ପଦାବଳୀ ରଚନା କରି ପାରୁଥିଲେ, ଚର୍ଯାପଦାବଳୀ ଏହା ପ୍ରମାଣ କରୁଛି ।

ତେଣୁ ଏକ ପକ୍ଷରେ ଏମାନେ ଓଡ଼ିଆ ଭାଷାରେ ମୂଳ ଭିତ୍ତି ସ୍ଥାପନ କରିଥିଲେ ଓ ଅନ୍ୟ ପକ୍ଷରେ ଧାର୍ମିକ ତଥ୍ୟ ପରିବେଷଣ ପୂର୍ବକ ଗଣ ମାନସକୁ ଉଦ୍ଭାସିତ କରିଥିଲେ ।

ଯଦି ରକ୍ତ ସଂପର୍କକୁ ଭିତ୍ତି କରି ଆଦିବାସୀ-ଅଣଆଦିବାସୀ ସୀମାରେଖା ନିର୍ଣ୍ଣୟ କରାଯାଏ, ତାହାହେଲେ ଏ କଥା ସ୍ପଷ୍ଟ ହେବ ଯେ, ବହୁ ପୁରାତନ ଯୁଗରେ ମଧ୍ୟ ଆଦିବାସୀ ଓ ଅଣଆଦିବାସୀମାନଙ୍କ ମଧ୍ୟରେ ବିବାହ କାର୍ଯ ଚାଲିଥିଲା । ଦୈତ୍ୟମାନଙ୍କୁ ଆଦିବାସୀ ଆଖ୍ୟା ଦିଆଗଲେ ଆହୁରି ବହୁତର ପ୍ରମାଦର ସମ୍ଭାବନା ଅଛି । କାରଣ ଭଗବାନ ଶ୍ରୀକୃଷ୍ଣଙ୍କ ମାତା ଏକ ଦୈତ୍ୟ ପରିବାରରୁ ଆସିଥିଲେ ।

ହିନ୍ଦୁ ଜଗତର ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥ ସର୍ବପ୍ରଥମେ ଶବରମାନଙ୍କର ଆରାଧ୍ୟ ଦେବତା ଥିଲେ । ଏବେ ମଧ୍ୟ ଦଇତାପତିମାନେ ଜଗନ୍ନାଥଙ୍କର ପୂଜା କରିଥାନ୍ତି । ଏହି ଦଇତାପତିମାନେ ଶବର ବଂଶ ଉଦ୍ଭବ । କିନ୍ତୁ ଏବେ ଦେଖାଯିବ ଯେ, ଏମାନେ ହିନ୍ଦୁ ସଂପ୍ରଦାୟ ଭିତରେ ବିବାହ ସଂପର୍କ ସ୍ଥାପନ କଲେଣି । ହିନ୍ଦୁ କରଣ ପରିବାର ଏହି ଦଇତାପତିମାନଙ୍କୁ କନ୍ୟାଦାନ କରୁଥିବା ଦୃଷ୍ଟାନ୍ତ ରହିଛି ।

ଗଣ୍ଡମାନେ କାଳକ୍ରମେ ନିଜକୁ ହିନ୍ଦୁ ସଂପ୍ରଦାୟ ଭିତରେ ସାମିଲ କରି ନେଇଛନ୍ତି । ସେମାନେ ସୂର୍ଯ ବା ଚନ୍ଦ୍ରବଂଶଜ କ୍ଷତ୍ରୀୟ ସନ୍ତାନ ବୋଲି ପରିଚୟ ଦେଇଥାନ୍ତି । କିନ୍ତୁ ସେମାନେ ପୂର୍ବପରି ଲିଙ୍ଗ, ହିଂସ ଏବଂ ଗ୍ରାମଶିରି ପୂଜା କରିଥାନ୍ତି ଓ ବ୍ରାହ୍ମଣଙ୍କ ପରି ପଇତା ଧାରଣ କରିଥାନ୍ତି । ପୁଣି ଏକ ସଙ୍ଗରେ ହିନ୍ଦୁ ଦେବାଦେବୀ ପୂଜା, ହିନ୍ଦୁ ପୂଜା ପାର୍ବଣ ପାଳନ ଓ ଅନ୍ୟାନ୍ୟ କାର୍ଯରେ ବ୍ରାହ୍ମଣ ପୁରୋହିତଙ୍କର ସାହାଯ୍ୟ ନେଇଥାନ୍ତି ।

ଭୂୟାଁମାନେ ନିଜକୁ କ୍ଷତ୍ରୀୟ ଭାବରେ ପରିଚୟ ଦେବା ଆରମ୍ଭ କଲେଣି । କେଉଁଝର ଜିଲ୍ଲାର କୁଆଁର ମୁଣ୍ଡାର ଭୂତପୂର୍ବ ଜମିଦାର ଏହି କ୍ଷତ୍ରୀୟ ଶ୍ରେଣୀର ଅନ୍ତର୍ଭୁକ୍ତ ।

ଆଦିବାସୀ ଶବର ଗୋଷ୍ଠୀ ହିନ୍ଦୁ ସଂପ୍ରଦାୟ ଭିତରେ କେମିତି ଭାବରେ ସାମିଲ ହୋଇଗଲେ, ତାର ଆଉ ଏକ ଦୃଷ୍ଟାନ୍ତ ରହିଛି । ଖୋର୍ଦ୍ଧା ଅଞ୍ଚଳରେ ଥିବା ପ୍ରସିଦ୍ଧ 'ତେର ସଉରି ଖଣ୍ଡାୟତ'ମାନଙ୍କ ବଂଶଲତା ଅନୁଧ୍ୟାନ କଲେ ଜଣାଯିବ ଯେ, ସେମାନେ ଏକ ସଉରି ରମଣୀର ଗର୍ଭଜାତ ସନ୍ତାନ । ଏହି ସୁନ୍ଦରୀ ପଦ୍ମା

ନାଗାସ୍ତ ସଉରା ରମଣୀଙ୍କୁ ଓଡ଼ିଶାର ଜଣେ ଅଭିଜାତ ବଂଶୀୟ ରାଜା ବିବାହ କରିଥିଲେ ।

ମୟୂରଭଂଜ ରାଜ ବଂଶ ବଳୀରୁ ଜଣାଯାଏ ଯେ, ଏ ବଂଶ ପ୍ରଥମେ ମୟୂର ଡିମ୍ବରୁ ଉତ୍ପନ୍ନ ହୋଇଥିଲା । ତେଣୁ ମୟୂର ସେ ରାଜ୍ୟରେ ସମ୍ମାନ ଭାବରେ ଗୃହୀତ । ପୁଣି ପୁରୀ ଜିଲ୍ଲାର ଏକ ଗ୍ରାମର 'ଭଂଜ' ସଂଜ୍ଞାଧାରୀ ଗୃହସ୍ଥ ମାନେ ପ୍ରକାଶ କରିଥାନ୍ତି ଯେ, ସେମାନେ ସେହି ମୟୂର ଡିମ୍ବରୁ ଉଦ୍ଭବ, ଯେଉଁ ମୟୂର ଡିମ୍ବରୁ ମୟୂରଭଂଜ ରାଜ ବଂଶ ବିସ୍ତାର ଲଭିଥିଲେ । କିନ୍ତୁ ପାର୍ଥକ୍ୟ ହେଲା, ଗୋଟିଏ ମୟୂରୀ ଦୁଇଟି ଡିମ୍ବ ଦେଇଥିଲା । ପ୍ରଥମ ଡିମ୍ବରୁ ଫୁଟି ବାହାରିଲା ମୟୂରଭଂଜ ରାଜବଂଶର ପ୍ରଥମ ପ୍ରତିଷ୍ଠାତା । କିନ୍ତୁ ଦ୍ୱିତୀୟ ଡିମ୍ବଟି ପ୍ରାକୃତିକ ପ୍ରଣାଳୀରେ ଫୁଟିବାର ସୁଯୋଗ ପାଇଲା ନାହିଁ । ତାହା ଗଡ଼ିଯାଇ ଫାଟିଗଲା । ତେଣୁ ମୟୂରଭଂଜର ରାଜବଂଶଜମାନେ ଫୁଟ ଭଂଜ ଓ ସେମାନେ ତୁଟ ଭଂଜ ରୂପେ ପରିଚିତ ହେଲେ ।

ଏମାନେ ଆଦିବାସୀ ସଂପ୍ରଦାୟ ଅନ୍ତର୍ଭୁକ୍ତ ହେଲେ ମଧ୍ୟ ହିନ୍ଦୁ ସମାଜରେ ଉଚ୍ଚ ପ୍ରତିଷ୍ଠା ଲାଭ କରି ଅଛନ୍ତି ।

ଓଡ଼ିଶାରେ ଅନେକ ରାଜା ଜମିଦାର ଥିଲେ, ଯେଉଁମାନେ ଆଦିବାସୀ ବଂଶଜ । ଗଣ୍ଡ, ଭୂୟାଁ, କନ୍ଧ, ବଂଝାଲ ପ୍ରଭୃତି ଆଦିବାସୀ ଶ୍ରେଣୀ ଭୁକ୍ତ ବଳଶାଳୀ ଲୋକମାନେ ନିଜ ବାହୁବଳରେ ରାଜ୍ୟ ଗଠନ କରି ଶାସନ ଗାଦୀରେ ଅଧିଷ୍ଠିତ ହୋଇଥିଲେ ।

ପ୍ରଥମେ ପାଟଣାରାଜ୍ୟ କନ୍ଧ ମଲ୍ଲିକମାନଙ୍କ ଦ୍ୱାରା ଶାସିତ ହେଉଥିବା ଇତିହାସରୁ ଜଣାପଡ଼େ । ପରେ ସେମାନଙ୍କ ଆଶ୍ରୟରେ ଲାଳିତ ପାଳିତ ହୋଇଥିବା ରାଜପୁତ ସନ୍ତାନ ରମାଇଦେବ, ଏହି ମଲ୍ଲିକମାନଙ୍କ ହାତରୁ କ୍ଷମତା ଅପହରଣ କରି ପାଟଣା ରାଜ୍ୟ ଗଠନ କରିଥିଲେ ।

ସଂସ୍କୃତି ଗତ ପାର୍ଥକ୍ୟ ଯୋଗୁ ଓ ଚଳଣୀରେ ତାରତମ୍ୟ ଘଟିଲେ ଗୋଟିଏ ସଂପ୍ରଦାୟର ଲୋକ ବିଭିନ୍ନ ଗୋଷ୍ଠୀର ଅନ୍ତର୍ଭୁକ୍ତ ହୋଇ ଯାଆନ୍ତି । ଶବରମାନେ ଏଭଳି ହୋଇଥିବାର ଦୃଷ୍ଟାନ୍ତ ରହିଛି । ୧୯୭୧ର ଜନଗଣନାରେ ଶବରମାନେ ଦୁଇଟି ଶ୍ରେଣୀରେ ବିଭକ୍ତ ହୋଇଥିବା ଦେଖାଯାଏ । ସେମାନେ ଯଥାକ୍ରମେ ସଉରା ଓ ଶବର ନାମରେ ଚିହ୍ନିତ ହୋଇ ଅଛନ୍ତି । ଏମାନେ ନିଜ ନିଜକୁ ସଉରା ଓ ଶବର ଭାବରେ ପରିଚୟ ଦେଇ, ଭିନ୍ନ ଭିନ୍ନ ଭାବରେ ଦେଖାଇବାକୁ ଜନଗଣନାକାରୀଙ୍କୁ ପ୍ରବର୍ତ୍ତାଇଥିବା ଜଣାଯାଏ ।

# : ଆଦିବାସୀ ସଂପ୍ରଦାୟର କେତେକ ପର୍ବପର୍ବାଣୀ :

## ନୂଆଁଖାଇ

ଭାଦ୍ରବ ମାସର ଶୁକ୍ଳ ପକ୍ଷରେ 'ନୂଆଁ ଖାଇ' ବା ନବାର୍ଣ୍ଣ ଭକ୍ଷଣ ପର୍ବ ପାଳିତ ହୁଏ। ପଶ୍ଚିମ ଓଡ଼ିଶାରେ ଏହା ଶ୍ରେଷ୍ଠ ପର୍ବ ରୂପେ ପରିଗଣିତ।

ଏହିକବେଳେ ବିଲରୁ ନୂଆ ଧାନ ଅମଳ ଆରମ୍ଭ ହୁଏ। କିନ୍ତୁ ନୂଆଁ ଖାଇ ପର୍ବ ପାଳନ ନକଲା ପର୍ଯ୍ୟନ୍ତ ଲୋକେ ନୂଆ ଧାନର ଗୃହିଲ ବ୍ୟବହାର କରନ୍ତି ନାହିଁ।

ଗ୍ରାମରେ ବାସ କରୁଥିବା ସମସ୍ତ ପରିବାର ଶୁଭଦିନ ନିର୍ଣ୍ଣୟ କରି ନୂଆଖାଇ ପର୍ବ ପାଳନ କରିଥାନ୍ତି। ବିଭିନ୍ନ ଗ୍ରାମର ଲୋକେ ଗ୍ରାମର ବାସିନ୍ଦାମାନଙ୍କର ସୁବିଧା ଅସୁବିଧା ପ୍ରତି ଲକ୍ଷ୍ୟ ରଖି, ବିଭିନ୍ନ ଦିନ ନିର୍ଣ୍ଣୟ କରିଥାନ୍ତି।

ନବାର୍ଣ୍ଣର ପୂର୍ବ ରାତିରେ ବା ନବାର୍ଣ୍ଣ ଦିନ ଭୋର୍‌ରୁ ଗ୍ରାମର ଝାଙ୍କର ଗ୍ରାମ ଦେବତାଙ୍କ ପାଖରେ ନୂଆଧାନ ଲଗାଏ। ପୁଣି ସେ ପ୍ରତି ଘରେ ନୂଆଧାନ ବାଣ୍ଟେ। ପ୍ରତି ଘରେ ଗୃହସ୍ଥ ଓ ଗୃହିଣୀ ସର୍ବ ପ୍ରଥମେ ଇଷ୍ଟ ଦେବତା ଓ ପିତୃ ପୁରୁଷଙ୍କ ଉଦ୍ଦେଶ୍ୟରେ 'ନୂଆ' ଲଗାଇ ପରିବାରର ଶୁଭ ମନାସି ଥାନ୍ତି। ତା'ପରେ ପରିବାରର ସମସ୍ତେ ଏକ ସଙ୍ଗରେ ବସି ନବାନ୍ନ ସେବା କରନ୍ତି।

ପରିବାରର ଯିଏ ଯେଉଁଠି ରହୁଥିଲେ ମଧ୍ୟ, ଯେମିତି କିଛି ବିଶେଷ ଅସୁବିଧା ନ ଥିଲେ, ନବାର୍ଣ୍ଣ ପୂର୍ବରୁ ନିଜ ଗ୍ରାମକୁ ଫେରିଆସେ। ଗୋଟିଏ ଗାଁରେ ଭିନେ ହୋଇ ଚଳୁଥିବା ବଂଶ, ପରିବାର ତଥା ଭାଇମାନେ ଏଦିନ ଏକାଠି ମିଶି ନବାର୍ଣ୍ଣ ଭକ୍ଷଣ କରିଥାନ୍ତି। ବର୍ଷ ମଧ୍ୟରେ ନିଜ ଆତ୍ମୀୟମାନଙ୍କ ସଙ୍ଗରେ ଯେତେ ଯାହା ବିରୋଧ, ବିବାଦ ଓ ମନାନ୍ତର ଥାଏ, ନବାର୍ଣ୍ଣ ଦିନ ତାହା ଆପେ ଆପେ ତୁଟିଯାଏ।

ନବାର୍ଣ୍ଣ ଭକ୍ଷଣ ପରେ ସାନମାନେ ବୟସ୍କମାନଙ୍କର ପାଦଧୂଳି ଗ୍ରହଣ କରନ୍ତି। ଏହାପରେ ଘର ଭିତରେ ଭୋଜି ଚାଲେ। ନାନାପ୍ରକାର ସୁମିଷ୍ଟ ଖାଦ୍ୟ ଓ ବ୍ୟଂଜନ ଖାଇ ଲୋକେ ତୃପ୍ତି ଲାଭ କରିଥାନ୍ତି।

ଏହାପରେ ଲୋକେ ଦାଣ୍ଡ ପିଣ୍ଡାରୁ ଓହ୍ଲାଇ ମାନ୍ୟାସ୍ପଦ ଲୋକଙ୍କୁ ଭେଟନ୍ତି ଓ ସମାନସ୍କନ୍ଦ ଲୋକଙ୍କୁ ମାନ୍ୟ ପ୍ରଦର୍ଶନ କରିଥାନ୍ତି। ଏହାକୁ ପଶ୍ଚିମ ଓଡ଼ିଶାରେ 'ଜୁହାର ଭେଟ' ବୋଲି କହନ୍ତି।

ଏହି ଦିନ ଗ୍ରାମର ବିଭିନ୍ନ ସ୍ଥାନରେ ପୁରାଣ ପାଠ, ଭାଗବତ ଅଧ୍ୟୟନ, ନୃତ୍ୟଗୀତ ତଥା ସାଂସ୍କୃତିକ ସମାରୋହର ଆୟୋଜନ ହୋଇଥାଏ।

ନବାର୍ଣ୍ଣ ଦିନଟାକୁ ଗ୍ରାମର ସମସ୍ତେ ଛୁଟିଦିନ ରୂପେ ପାଳନ କରନ୍ତି । ଏହିଦିନ ହଳିଆ ସାହୁକାର ଘରକୁ ହଳ ବୁଲାଇବାକୁ ଯାଏନାହିଁ ।

ସାହୁକାର ଏହିଦିନ ତାର ଆଶ୍ରିତ ଗୃହର ନୌକର ଘରକୁ ଚାଉଳ, ମୁଗ, ବରି, ଗୁଡ଼ ଇତ୍ୟାଦି ପଠାଇଥାଏ । ପୁଣି ଗ୍ରାମର ବ୍ରାହ୍ମଣ ଘରମାନଙ୍କୁ ବ୍ରାହ୍ମଣ ଭିନ୍ନ ଅନ୍ୟ ସଂପ୍ରଦାୟର ଲୋକମାନେ 'ଅଡ଼ୁଆ' ପଠାଇଥାନ୍ତି । ଚାଉଳ, ମୁଗ, ବରି, ଗୁଡ଼, ଘିଅ, ପରିବା ପ୍ରଭୃତି ରନ୍ଧନ ସାମଗ୍ରୀକୁ ଗୋଟିଏ ଥାଳିରେ ଭର୍ତ୍ତି କରିବାର ନାମ 'ଅଡ଼ୁଆ' । ଯାହା ଘରକୁ ଅଡ଼ୁଆ ପଠାଯାଏ, ପରବର୍ତ୍ତୀ ଦିନମାନଙ୍କରେ ସେ ସୁମିଷ୍ଟ ଖାଦ୍ୟ ତଥା ପିଠା ପଣା ପ୍ରସ୍ତୁତ କରି ଅଡ଼ୁଆ-ଦାତାମାନଙ୍କ ଘରେ ଦେଇ-ଥାଏ । ଏହା ଭକ୍ତି ଓ ଶ୍ରଦ୍ଧା ନିବେଦନର ପ୍ରତୀକ ରୂପେ ଧରାଯାଏ ।

ନବାର୍ଣ୍ଣ ଦିନ ଲୋକମାନେ ନୂଆ ଅନ୍ନ ଭକ୍ଷଣ କରିବା ସଙ୍ଗେ ସଙ୍ଗେ ନୂଆ ବସ୍ତ୍ର ପରିଧାନ କରିଥାନ୍ତି । ପରସ୍ପର ସଙ୍ଗରେ 'ଜୁହାରଭେଟ' ହେଲାବେଳେ ପ୍ରକାଶ କରନ୍ତି, ଗୋଟି ବର୍ଷ ଗଲା । ଆଜି ନୂଆ ଅନ୍ନ ପାଇଲେ । ଭଗବାନଙ୍କ ଦୟାରୁ ଏବର୍ଷ ଶୁଭରେ କଟିଯାଉ ।

ଏ ପର୍ବକୁ ଆଦିବାସୀ ତଥା ଅଣଆଦିବାସୀମାନେ ସମାନ ଗୁରୁତ୍ୱ ଦେଇଥାନ୍ତି । ମୋଟ ଉପରେ, କୃଷିଜୀବୀ ମାନଙ୍କର ଏହା ଏକ ଶ୍ରେଷ୍ଠ ପର୍ବ ଅଟେ ।

ନୂଆଖାଇ ପର୍ବ କୃଷି ଭିତ୍ତିକ ପର୍ବ ଅଟେ । ଆଦିବାସୀମାନେ ଏହି ଦିନ ନିଜ ଗୃହ ଜମିରେ ଘୃତ ଓ ଦୁଧ ଧାର ଦେଇଥାନ୍ତି । ନବାର୍ଣ୍ଣ ଦିନ ଦିବ୍ୟ ଭୋଜନ ସଙ୍ଗରେ, ପ୍ରଚୁର ମଦ୍ୟପାନ କରି ଏମାନେ ନୃତ୍ୟ-ଗୀତ ଆସରରେ ନିଜକୁ ହଜାଇ ଦେଇଥାନ୍ତି ।

ଆଦିବାସୀମାନେ ଏହି ନବାର୍ଣ୍ଣ ଭକ୍ଷଣ ଉତ୍ସବ ବ୍ୟତୀତ ଅମ୍ବ ନୂଆଖାଇ, ମହୁଲ ନୂଆଖାଇ ପର୍ବ ମଧ୍ୟ ପାଳନ କରିଥାନ୍ତି । କିନ୍ତୁ ଅଣଆଦିବାସୀମାନେ ନବାର୍ଣ୍ଣ ଭକ୍ଷଣ ପର୍ବ ବ୍ୟତୀତ ସେହି ଧରଣର ଅନ୍ୟ ପର୍ବ ପାଳନ କରି ନ ଥାନ୍ତି ।

## : କାଦୋଯାତ୍ରା ଓ ମେରୁଯାତ୍ରା :

ପଶ୍ଚିମ ଓଡ଼ିଶାର ଗ୍ରାମାଞ୍ଚଳରେ କୃଷକମାନଙ୍କ ଦ୍ୱାରା କାଦୋଯାତ୍ରା ଓ ମେରୁଯାତ୍ରା ପର୍ବ ପାଳିତ ହୋଇଥାଏ ।

ଏହି ଯାତ୍ରା ଦୁଇଟି କୃଷି ଅଭିମୁଖୀ ଯାତ୍ରା ଅଟେ ।

ଶ୍ରାବଣ ମାସରେ ଗ୍ରାମ ଦେବତାଙ୍କ ପାଖରେ ମେଷ ଓ ଛେଳି ବଳିଦେଇ ଗ୍ରାମର କୃଷକମାନେ **'କାଦୋଯାତ୍ରା'** ପାଳନ କରିଥାନ୍ତି ।

କାଦୋଯାତ୍ରା ନ ହେବା ପର୍ଯ୍ୟନ୍ତ କୃଷକ ନିଜ କ୍ଷେତରେ ଧାନରୁଆ ହେବା ଯାଏ ଉପବାସ ରହିଥାଏ । କାଦୋଯାତ୍ରା ପରେ ଧାନରୁଆ ହେଲେ ତାକୁ ଆଉ ଉପବାସ ରହିବାକୁ ପଡ଼େନାହିଁ ।

ମାର୍ଗଶୀର ମାସରେ **ମେରୁଯାତ୍ରା** ପାଳିତ ହୁଏ ।

ଏହିଦିନ ମଧ୍ୟ ଖଳାର ମେରୁ-ଦେବତା ଉଦ୍ଦେଶ୍ୟରେ ବଳି ଦିଆଯାଏ ।

ମେରୁଯାତ୍ରା ନିଷ୍ଠା ସହକାରେ ପାଳନ କଲେ, ଖଳାରେ ଥିବା ଧାନରୁ ଓ ବେଙ୍ଗଳାରୁ ଅଧିକ ଶସ୍ୟ ମିଳେ ବୋଲି ବିଶ୍ୱାସ କରାଯାଏ ।

ଏହି ପର୍ବ ଦୁଇଟି ଆଦିବାସୀମାନଙ୍କ ଦ୍ୱାରା ଆରମ୍ଭ ହୋଇଥିଲେ ମଧ୍ୟ, ଏବେ ଅଣଆଦିବାସୀ ସମ୍ପ୍ରଦାୟର କୃଷକ-ଗୃହସ୍ଥମାନେ ମଧ୍ୟ ଏହାକୁ ପାଳନ କରିଥାନ୍ତି ।

## : ଗୁଣ୍ଡିଖିଆ :

ଫାଲ୍‌ଗୁନ ପୂର୍ଣ୍ଣିମୀ ହିନ୍ଦୁମାନଙ୍କ ପାଇଁ ଏକ ପୁଣ୍ୟ ଦିବସ ଅଟେ ।

ଏହିଦିନ ଦୋଳଯାତ୍ରା ଓ ଫଗୁଖେଳ ଉତ୍ସବ ପାଳନ କରାଯାଏ ।

ଆଦିବାସୀ ଅଧ୍ୟୁଷିତ ପଶ୍ଚିମ ଓଡ଼ିଶାରେ ଫାଲ୍‌ଗୁନ ପୂର୍ଣ୍ଣମୀ ଦିନ 'ଗୁଣ୍ଡିଖିଆ' ପର୍ବ ପାଳିତ ହୁଏ । ଏହିଦିନ ଅରଣ୍ୟଜାତ ଫଳମାନ ଯଥା, ଆମ୍ବ-ଚ଼ର-ମହୁଲ ପ୍ରଭୃତି ନୂଆ ଫଳ ସଂଗ୍ରହ କରାଯାଇ ନିଜ ନିଜ ଘରେ ଇଷ୍ଟ ଦେବଙ୍କ ଆଗରେ ପୂଜା କରାଯାଏ । ଗ୍ରାମର ଝାଁଙ୍କ ଏହି ନୂଆଫଳ ଆଣି ଗ୍ରାମଦେବତାଙ୍କୁ ପୂଜାକରେ । ପାଣି ଝଣ୍ଡ, ସାକର, ଭଜା ଚଣା ପ୍ରଭୃତି ସଙ୍ଗରେ ଲୋକେ ବନ୍ୟଜାତ ଆମ୍ବ, ଚ଼ର ମହୁଲ ପ୍ରଭୃତି ପ୍ରଥମଥର ଖାଆନ୍ତି । ଏହାକୁ 'ଗୁଣ୍ଡିଖିଆ' ପର୍ବ କୁହାଯାଏ । ଗୁଣ୍ଡିଖିଆ ପର୍ବ ପାଳନ କରା ନ ଯିବା ପର୍ଯ୍ୟନ୍ତ କେହିହେଲେ ଆମ୍ବ, ଚ଼ର, ମହୁଲ ପ୍ରଭୃତି ଅରଣ୍ୟ ଜାତ ଫଳ ଖାଆନ୍ତି ନାହିଁ ।

ପୂର୍ଣ୍ଣମୀ ଓ ପୂର୍ଣ୍ଣମୀ ପରଦିନ ଯଥାକ୍ରମେ ଫଗୁଖେଳ ଓ ହୋରଖେଳ କରାଯାଇ-ଥାଏ । ଏହାକୁ ବସନ୍ତ ଉତ୍ସବ ବୋଲି କୁହାଯାଏ ।

ଫାଲ୍‌ଗୁନ ପୂର୍ଣ୍ଣିମୀ ଦିନ 'ହୋଲି' ପୋଡ଼ାଯାଏ । ଏହାକୁ ଅଗ୍ନି ଉତ୍ସବ କୁହାଯାଏ ।

ପଞ୍ଚମୀ ପୂର୍ବ ସନ୍ଧ୍ୟାରେ ଗ୍ରାମର ଲୋକମାନେ ଅନେକ କାଠ ଆଣି ଗ୍ରାମ ବାହାରେ ଏକାଠି ଜମା କରିଥାନ୍ତି । ସେମାନେ ଅଗ୍ନି ଦେବତା କାଠ ଗଦାକୁ ପୂଜା କରେ ଓ ତହିଁରେ ଅଗ୍ନି ସଂଯୋଗ କରେ । ତା'ପରେ ଦେଖ ଶୁକଲଯାଏ । ସମବେତ ଜନତା ଚଳନ୍ତି 'ଢୋଲ'ର ଚଉପାଖରେ ଅଶ୍ଳୀଳ ଗୀତ ଗାଇ ନାଚନ୍ତି ।

ଏହି ଢୋଲ ସଙ୍ଗେ ଘୁଣ୍ଡିଖିଆ ପର୍ବର ଏକମାତ୍ର ସମ୍ପର୍କ ହେଲ, ଆନନ୍ଦରେ ମଦ୍ୟପ ମନଲହସ୍ କରିବା । ଏହି ପର୍ବ ଆଦିବାସୀ ଜୀବନରେ ସତେଜତା ଭରି-ଦିଏ । ଅଣଆଦିବାସୀ ସଂପ୍ରଦାୟର ଲୋକମାନେ ମଧ୍ୟ ଏହି ଉତ୍ସବରେ ସହଯୋଗ କରିବା ସଙ୍ଗେ ସଙ୍ଗେ, ନିଜେ ମଧ୍ୟ ଏହି ଆନନ୍ଦ ଉତ୍ସବରେ ଜଡ଼ିତ ରହିଥାନ୍ତି ।

କଳାହାଣ୍ଡିର—

## : ଢିଏଲ୍ ପର୍ବ ବା ଗୃଉଳଧୂଆ ପର୍ବ :

ଢିଏଲ୍ ପର୍ବ କଳାହାଣ୍ଡି ଅଞ୍ଚଳର ଆଦିବାସୀମାନଙ୍କର ଏକ ସାମାଜିକ ପର୍ବ । ଏହା ସେ ଅଞ୍ଚଳରେ ପରମ୍ପରାକ୍ରମେ ପାଳିତ ହୋଇ ଆସୁଛି ।

ଏହା ଶବର, ଗଣ୍ଡ ପ୍ରଭୃତି ଆଦିବାସୀ ସଂପ୍ରଦାୟର ଲୋକମାନଙ୍କ ଦ୍ୱାରା ବଡ଼ ଜାକଜମକ ଭାବରେ ପାଳିତ ହୋଇଥାଏ । ଆଦିବାସୀ ସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇ ସରଳ ପଲ୍ଲୀ କୋଳର ଅଣଆଦିବାସୀମାନେ ମଧ୍ୟ ଏ ପର୍ବ ପାଳନ କରିଥାନ୍ତି ।

କାର୍ତ୍ତିକ ଅମାବାସ୍ୟା ଦିନ ଭାରତର ସର୍ବତ୍ର 'ଦୀପାବଳୀ' ଉତ୍ସବ ପାଳନ କରା ଯାଇଥାଏ । ଏହି ଉତ୍ସବର କିଛିଦିନ ପରେ ଅର୍ଥାତ୍ ଶୁକ୍ଳ ପକ୍ଷର ଏକ ଶୁଭ ଦିନ ଦେଖି ଆଦିବାସୀମାନେ 'ଢିଏଲ୍' ପର୍ବ ପାଳନ କରିଥାନ୍ତି । ସାଧାରଣତଃ କାର୍ତ୍ତିକ ଶୁକ୍ଳ ପକ୍ଷର ପଂଚମୀ ଠାରୁ ଦଶମୀ ଦିନ ଏହି ପର୍ବ ପାଳନ କରାଯିବା ପାଇଁ ସ୍ଥିର କରାଯାଏ ।

'ଦୀପାବଳୀ' ଶବ୍ଦରୁ 'ଢିଏଲ୍'ର ସୃଷ୍ଟି ।

ପଶ୍ଚିମ ଓଡ଼ିଶାର ଅର୍ଥନୀତି ସାଧାରଣତଃ କୃଷି ଉପରେ ନିର୍ଭର କରିଥାଏ । ଗ୍ରାମାଞ୍ଚଳର ପ୍ରତି ପରିବାର କୃଷିଜୀବୀ । ତେଣୁ ସେମାନଙ୍କ ଦ୍ୱାରା ପାଳିତ ପର୍ବ-ପର୍ବାଣୀରେ କୃଷି-ଭୂମିକା ବିଦ୍ୟମାନ ।

ଛତାଳୀଗି ଅମାବାସ୍ୟା ଦିନ ପ୍ରତ୍ୟୁଷରୁ ଗ୍ରାମର କୃଷକମାନେ ନିଜର ଗୁଷ ଜମି ହୁଡ଼ରେ କେନ୍ଦୁ ଡାଳ ( ଭାଲିଆ ଜମ୍ମୁ ଖଏର୍ ଡାଳ ବ ଚଳେ ) ପୋତି ଦେଇ

ଆସନ୍ତି । ସେ ଦିନ କୃଷିକ୍ଷେତ ନିକଟରେ ଦୁଧ ଚାଉଳ ଛିଞ୍ଚାଯାଏ ଓ କୃଷି କର୍ମରେ ସଫଳତା ଲାଭ ପାଇଁ କୃଷି-ଦେବତାଙ୍କୁ ପ୍ରାର୍ଥନା କରାଯାଏ । ଏହାର ବ୍ୟତିକ୍ରମ ହେଲେ ସେ ବର୍ଷ ଧାନ ସମ୍ପୂର୍ଣ୍ଣ ଭଲ ହୁଏନାହିଁ ଓ ଧାନ ଫୁଲ ସେ ବର୍ଷ ଭଲ ଦୁଧ ଧରେ ନାହିଁ ବୋଲି କୃଷକମାନେ ବିଶ୍ୱାସ କରନ୍ତି ।

ପ୍ରତିବର୍ଷ ନବାର୍ଣ୍ଣ ପରେ ନୂଆ ଚାଉଳରେ ଭାତ ରାନ୍ଧି ଖାଇବା ଆରମ୍ଭ ହୁଏ ସତ, ମାତ୍ର ସେହି ନୂଆ ଚାଉଳକୁ ଅଧିଆ ରାନ୍ଧି ଖିଆଯାଏ । କାର୍ତ୍ତିକ ଶୁକ୍ଳପକ୍ଷରେ 'ଢ଼ଏଲ ପର୍ବ' ବା 'ଚାଉଳଧୁଆ ପର୍ବ' ପାଳିତ ହେବା ପରେ ଯାଇ ଏ ଅଞ୍ଚଳର ଆଦିବାସୀମାନେ ନୂଆ ଚାଉଳକୁ ଧୋଇ ଭାତ ରାନ୍ଧନ୍ତି ।

ଢ଼ଏଲ ପର୍ବଦିନ ପ୍ରତ୍ୟୁଷରୁ ସମସ୍ତେ ଶଯ୍ୟା ତ୍ୟାଗ କରି ଘରକୁ ସଫାସୁତୁରା କରନ୍ତି । ସେହିଦିନ ବ୍ୟବହୃତ ପୁରୁଣା ମାଟି ହାଣ୍ଡି ସବୁ ନଷ୍ଟ କରାଯାଇ ନୂଆହାଣ୍ଡି ବ୍ୟବହାର କରାଯାଏ । ଅରୁଆ ଚାଉଳର ପିଠାଉରେ କାନ୍ଥ ଦେହରେ ଦେବ-ଦେବୀଙ୍କର ଚିତ୍ର ସବୁ ଅଙ୍କନ କରାଯାଏ । ପୁଣି ରନ୍ଧା ଘର କାନ୍ଥରେ ପିଠାଉ ସାହାଯ୍ୟରେ ହାତ ପାପୁଲିର ଚିହ୍ନ ଓ ଦେବଦେବୀ ଚିହ୍ନ ଅଙ୍କନ କରାଯାଏ ।

ଘର ଅଗଣାରେ ଚାଉଳ ପୁଞ୍ଜି ରଖାଯାଏ । ବଳି ପାଇଁ ଉଦ୍ଦିଷ୍ଟ କୁକୁଡ଼ାକୁ ସେହି ଚାଉଳ ଠୁକିବା ପାଇଁ ଛାଡ଼ି ଦିଆଯାଏ । ପୁଞ୍ଜି ଚାଉଳ ନ ଖାଇବା ପର୍ଯ୍ୟନ୍ତ କୁକୁଡ଼ାକୁ ବଳି ଦିଆଯାଏ ନାହିଁ । ଏହି ପର୍ବ ଉପଲକ୍ଷେ ଘରର ସମସ୍ତେ ଏକାଠି ହୋଇଥାନ୍ତି । କେହି ଜଣେ ଅନୁପସ୍ଥିତ ରହିଲେ, କୁକୁଡ଼ା ସେହି ପୁଞ୍ଜି ଚାଉଳ ଖାଏ ନାହିଁ ବୋଲି କୃଷକ ଗୃହସ୍ଥର ବିଶ୍ୱାସ ରହିଛି । କୁକୁଡ଼ା ଯଦି ପୁଞ୍ଜି ଚାଉଳ ନ ଖାଏ, ତାକୁ ସେଥିପାଇଁ ନାନାମତେ ପ୍ରୋତ୍ସାହିତ କରାଯାଏ । ବେଳେ-ବେଳେ କୁକୁଡ଼ାକୁ ମଦଦେଇ ଏଥିପାଇଁ ମନାଇ ଦିଆଯାଏ ।

ଦିନ ଏଗାରଟାରୁ ବାରଟା ମଧ୍ୟରେ ପୂଜା ଆରମ୍ଭ ହୁଏ । ଇଷ୍ଟ ଦେବୀଙ୍କୁ ପୂଜା କରି ତାଙ୍କ ପାଖରେ କୁକୁଡ଼ା ବଳି ଦିଆଯାଏ । ଏହି ପୂଜାରେ ବ୍ରାହ୍ମଣ ପୁରୋହିତଙ୍କୁ ଡକାଯାଏ ନାହିଁ । ଗୃହକର୍ତ୍ତା ନିଜେ ଇଷ୍ଟଦେବୀଙ୍କ ପୂଜା କରେ ।

ବଳି କୁକୁଡ଼ା ରନ୍ଧାଯାଏ ଓ ଖାଇଲା ବେଳେ ସମସ୍ତଙ୍କୁ ବାଣ୍ଟି ଦିଆଯାଏ । ଏହିଦିନ ପିଠା, କ୍ଷୀରି ପ୍ରଭୃତି ସୁମିଷ୍ଟ ଭୋଜନ ସାମଗ୍ରୀ ପ୍ରସ୍ତୁତ ହୋଇଥାଏ ସମସ୍ତେ ଏକାଠି ବସି ଭୋଜନ କରନ୍ତି ।

ପ୍ରାୟ ସମସ୍ତ ଗ୍ରାମବାସୀ ଏ ପର୍ବକୁ ଆନନ୍ଦରେ ମନାଇ ଥାନ୍ତି ।

ସୁମିଷ୍ଟ ଭୋଜନ ସଙ୍ଗରେ ମାଂସ ଓ ମଦ ଖାଇ ଲୋକେ ବିଭିନ୍ନ ପ୍ରକାର କ୍ରୀଡ଼ା କୌତୁକରେ ଯୋଗ ଦେଇଥାନ୍ତି । କୌଣସି କୌଣସି ସ୍ଥାନରେ ନୃତ୍ୟ ସଙ୍ଗୀତର ଆୟୋଜନ ହୋଇଥାଏ । ଅଞ୍ଚଳର ପ୍ରତିଟି ଗ୍ରାମ ଉତ୍ସବ ମୁଖରିତ ହୁଏ ।

## : ହୁରାଲି ପରବ୍ :

ପଶ୍ଚିମ ଓଡ଼ିଶାର ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲାରେ ବିଂଝାଲମାନେ ବହୁ ସଂଖ୍ୟାରେ ବସବାସ କରିଥାନ୍ତି । ଏମାନେ ବିଭିନ୍ନ ପ୍ରକାର ପର୍ବପର୍ବାଣୀ ପାଳନ କରିଥାନ୍ତି । ସେ ସମସ୍ତ ଅନ୍ୟାନ୍ୟ ଆଦିବାସୀମାନେ ପାଳନ କରୁଥିବା ପର୍ବପର୍ବାଣୀ ପରି ପାଳିତ ହୋଇଥାଏ ।

କିନ୍ତୁ 'ହୁରିଲି ପରବ୍' ବିଞ୍ଝାଲମାନଙ୍କ ମଧ୍ୟରେ ପ୍ରଚଳିତ ଏକ ସ୍ୱତନ୍ତ୍ର ଧରଣର ପର୍ବ ।

ଏମାନେ ଶ୍ରାବଣ ମାସରେ ଏ ପର୍ବ ପାଳନ କରନ୍ତି । ଏହା ସେମାନଙ୍କ ନିଜ ପୁଅ ଝିଅମାନଙ୍କ ପାଇଁ ପାଳନ କରି ଯାଇଥାଏ ।

ଏହିଦିନ ସେମାନେ ଖିରିପିଠା ଇତ୍ୟାଦି ସୁମିଷ୍ଟ ଦ୍ରବ୍ୟ ପ୍ରସ୍ତୁତ କରି ପିଲାଛୁଆଙ୍କୁ ଦିଅନ୍ତି ଓ ନିଜେ ଖାଆନ୍ତି । ପୁଣି ଘରର ଶ୍ରେଷ୍ଠ ଶିଶୁମାନଙ୍କ ପାଦରେ ଅରୁଆ ଚାଉଳ ଓ କଞ୍ଚା କ୍ଷୀର ଦେଇ ପୂଜା କରନ୍ତି ।

କାରଣ ବିଂଝାଲମାନେ ବିଶ୍ୱାସ କରନ୍ତି ଯେ, ସେମାନଙ୍କ ପୂର୍ବପୁରୁଷମାନେ ଶିଶୁ ରୂପରେ ନିଜ ଘରେ ଜନ୍ମ ନେଇଛନ୍ତି । ଶିଶୁମାନଙ୍କୁ ପୂଜା କରିବା ଅର୍ଥ ପୂର୍ବପୁରୁଷଙ୍କୁ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରିବା ।

ବିଂଝାଲମାନଙ୍କ ଏ ପ୍ରକାର ଜୀବନ ଦର୍ଶନର ଭୂମିକା ତାତ୍ପର୍ଯ୍ୟପୂର୍ଣ୍ଣ ଜଣାପଡ଼େ ।

ଏଥିରେ ହିନ୍ଦୁ ଦର୍ଶନରେ ବ୍ୟାଖ୍ୟା କରି ଯାଇଥିବା ଆତ୍ମାର ଅବିନଶ୍ୱରତା ଭାବ ପ୍ରକଟିତ ।

## : ଚୈତ୍ର ବା ଚଇତ୍ ପରବ୍ :

ପରେଙ୍ଗା ବା ପାରେଙ୍ଗମାନେ ଓଡ଼ିଶାର କୋରାପୁଟ ଜିଲ୍ଲାରେ ବହୁ ସଂଖ୍ୟାରେ ବସବାସ କରିଥାନ୍ତି । ଏମାନେ ଗୋଷ୍ଠୀ ଜୀବନ ଯାପନ କରନ୍ତି । ବିଭିନ୍ନ ପର୍ବ-ପର୍ବାଣୀ ପାଳନ କଲାବେଳେ ମଧ୍ୟ ଗ୍ରାମର ସମସ୍ତେ ଏକାଠି ପାଳିଥାନ୍ତି ।

ପରେଙ୍ଗାମାନେ ଚୈତ ପର୍ବକୁ ଅତି ଆଡ଼ମ୍ବର ସହକାରେ ପାଳନ କରିଥାନ୍ତି । ଏହା ଶିକାର ପର୍ବ ରୂପେ ପରିଚିତ । ଏ ପର୍ବ ଦଶଦିନ ବ୍ୟାପୀ ଲାଗି ରହେ ।

ପର୍ବର ପ୍ରଥମ ଦିବସରେ ସେମାନେ ଦୁଇଟି କୁକୁଡ଼ା ଓ ଗୋଟିଏ ଛେଳି ନେଇ ଗ୍ରାମ୍ୟ ଦେବତାଙ୍କ ଆଗରେ ବଳି ଦିଅନ୍ତି । ସେ ଦିନ ରାତିରେ ପ୍ରତି ଘରେ ଭୋଜି ହୁଏ । ମାଛ, ମାଂସ, ଭାତ ଓ ମଦ ଖାଇ ସେମାନେ ମଉଜ କରନ୍ତି ।

ଦ୍ୱିତୀୟ ଦିନ ଗ୍ରାମ୍ୟ ରାସ୍ତାର ଗୋଟିଏ ସ୍ଥାନ ପରିଷ୍କାର କରାଯାଇ ଗୋବରରେ ଲିପ ପୋଛା ହୁଏ । ସେଦିନ ସେଠାରେ ଗୋଟିଏ କୁକୁଡ଼ା ବାଟ ଦେବତା ଉଦ୍ଦେଶ୍ୟରେ ବଳି ଦିଆଯାଏ । ପୁଣି ଗୃହସ୍ଥ ନିଜ ଘରକୁ ଯାଇ ପୂର୍ବପୁରୁଷଙ୍କ ଉଦ୍ଦେଶ୍ୟରେ ଆଉ ଗୋଟିଏ କୁକୁଡ଼ା ବଳି ଦିଏ ।

ପରବର୍ତ୍ତୀ ଛଅ ଦିନ ଯାକ ଗାଁର ସମସ୍ତେ ଖାଇ ପିଇ ମଉଜ କରନ୍ତି । ଏହି ସମୟରେ ଗ୍ରାମବାସୀମାନେ ପ୍ରଚୁର ମଦ୍ୟପାନ କରିଥାନ୍ତି ଓ ସେଥିରେ ନୃତ୍ୟ ଗୀତରେ ଯୋଗ ଦେଇଥାନ୍ତି । ସମସ୍ତେ ହସ ଖୁସିରେ ଦିନସବୁ କଟାଇବାକୁ ଭଲ ପାଆନ୍ତି ।

ନବମ ଦିନ ଗ୍ରାମ୍ୟ-ଦେବତା ଆଗରେ ଛେଳି, କୁକୁଡ଼ା ଓ ଘୁଷୁରି ବଳି ଦିଆଯାଏ । ପୁଣି 'ଗ୍ରାମ ଦେବୀ' ବା ଗ୍ରାମ୍ୟ ଦେବତା ଆଗରେ 'ଶିକାର ଉପକରଣ' ଯଥା, ଟାଙ୍ଗିଆ, ବର୍ଚ୍ଛା, ଧନୁଶର ଇତ୍ୟାଦି ପୂଜା କରାଯାଏ । ଗ୍ରାମମୁଖ୍ୟ ନିଜ ହାତରେ ଏ ପୂଜା କରିଥାଏ । ଗ୍ରାମର ସମସ୍ତେ ଆଗାମୀ ଦିନରେ ଅନୁଷ୍ଠିତ ହେବାକୁ ଯାଉଥିବା 'ଶିକାର'ର ସାଫଲ୍ୟ କାମନା କରନ୍ତି ।

ଦଶମ ଦିନ ସମସ୍ତେ ମିଶି ଶିକାର କରିବାକୁ ବାହାରନ୍ତି । ଜଙ୍ଗଲ ବା ପାହାଡ଼ ଦେବତା ଓ ବଣ ଦେବତାଙ୍କ ଉଦ୍ଦେଶ୍ୟରେ ଏମାନେ କୁକୁଡ଼ା ପ୍ରଭୃତି ବଳି ଦେବା ପରେ ହିଁ, ବଣ ଭିତରେ ପଶି ଶିକାର କରନ୍ତି ।

ଏହି ଶିକାର ଅନେକ ଦିନ ଧରି ଚାଲେ । ବହୁ ଜୀବଜନ୍ତୁ ଶିକାର କରି ଏମାନେ ନୃତ୍ୟ ଗୀତ ସହ ନିଜ ଗ୍ରାମକୁ ଫେରି ଆସନ୍ତି ।

ଗଦବାମାନେ ଏହି ପର୍ବ ଉପଲକ୍ଷେ 'ଧେମସା' ନୃତ୍ୟର ଆୟୋଜନ କରିଥାନ୍ତି ।

ଧେମସା ନୃତ୍ୟର ବିଶେଷତ୍ୱ ହେଲା, ସ୍ତ୍ରୀ ଲୋକମାନେ କେରଙ୍ଗ-ଆଚ୍ଛାଦିତା ହୋଇ ନାଚନ୍ତି ଓ ପୁରୁଷମାନେ ଢୋଲ, ଟମକ ଓ ମହୁରି ବଜାଇ ସେମାନଙ୍କୁ ନଚାଉଥାନ୍ତି ।

ଗଦବାମାନେ ଚୈତ ପର୍ବ ମନାଇ ବଣକୁ ଶିକାର୍ ପାଇଁ ଯାଆନ୍ତି ଓ ଶିକାର ନ ପାଇବା ପର୍ଯ୍ୟନ୍ତ ଫେରନ୍ତି ନାହିଁ । ଶିକାର କରି ଏମାନେ ବଣ-ମୁଣ୍ଡରେ ଏକାଠି ଜମା କରନ୍ତି । ଏହାପରେ ସ୍ତ୍ରୀମାନଙ୍କୁ ଡ଼ାକରା ପଡେ ।

ସ୍ତ୍ରୀମାନେ 'ଧେମ୍ସା' ନାଚ ନାଚି ଆଗରେ ଆଗରେ ଚାଲନ୍ତି ଓ ପୁରୁଷମାନେ ଶିକାର ନେଇ ସେମାନଙ୍କ ଅନୁଗମନ କରନ୍ତି । ଗ୍ରାମରେ ପହଞ୍ଚିବା ପରେ ଶିକାର ସବୁ ଗ୍ରାମ-ମୁଖ୍ୟଙ୍କ ଘର ସାମନାରେ ଜମା କରାଯାଏ । ଗ୍ରାମ-ମୁଖ୍ୟ ଗ୍ରାମର ସମସ୍ତଙ୍କୁ ମାଂସ ଭାଗ କରି ପଠାଇଥାନ୍ତି ।

ଏହି ଉତ୍ସବ ଗଦବାମାନଙ୍କ ଦ୍ୱାରା ଏଗାର ଦିନ ଧରି ଚାଲେ । ଏଗାର ଦିନଯାକ ଗ୍ରାମର ସମସ୍ତେ ମାଂସ ଓ ମଦ ଖାଇ ମଉଜ କରନ୍ତି । ଗଦବା ଯୁବକ ଯୁବତୀମାନେ ନୃତ୍ୟ ଗୀତ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରନ୍ତି । ଏମାନେ ବିଭିନ୍ନ ଗ୍ରାମକୁ ଯାଇ ନୃତ୍ୟ ପ୍ରଦର୍ଶନ କରନ୍ତି ଓ ଜୀବନ-ସାଥୀ ବାଛନ୍ତି । ତେଣୁ ଏହି ପର୍ବ ଅବିବାହିତ ଯୁବକ ଓ କୁମାରୀ ଯୁବତୀମାନଙ୍କ ପାଇଁ ମିଳନ-ପର୍ବର ଭୂମିକା ଗ୍ରହଣ କରିଥାଏ ।

ଚଇତ୍ର ପର୍ବରେ ପ୍ରେମ ଓ ପ୍ରଣୟ ଗୀତମାନ ପରିବେଷଣ କରାଯାଇଥାଏ ।

## : ଗୋଡର୍ ପର୍ବ :

କୋରାପୁଟ ଜିଲ୍ଲାର ଗଦବାମାନେ ଯେଉଁ କେତୋଟି ବିଶିଷ୍ଟ ପର୍ବପର୍ବାଣୀ ପାଳନ କରିଥାନ୍ତି 'ଗୋଡର୍' ବା 'ଗୋଇ ପର୍ବ' ସେମାନଙ୍କ ମଧ୍ୟରେ ଅନ୍ୟତମ ।

ଏହା ଏକ ମୃତାହ ପର୍ବ ଅଟେ ।

ଘରର କୌଣସି ଲୋକ ମୃତ୍ୟୁମୁଖରେ ପଡ଼ିଲେ, ମୃତ୍ୟୁର ଦଶମ ଦିନ ଗାଁ ଲୋକଙ୍କୁ ଭୋଜି ଦେଇ ଗୃହସ୍ଥ ଶୁଦ୍ଧ ହୁଏ । ଏହି ଭୋଜିରେ ମହିଷୀ ମାଂସ ପ୍ରସ୍ତୁତ କରାଯାଇଥାଏ ।
ମୃତ୍ୟୁର ଦୁଇ ତିନି ବର୍ଷ ପରେ, ମୃତ୍ୟୁର ଗୃହସ୍ଥ ତାର ମୃତ ପିତ୍ତ,ମାତାଙ୍କ ଉଦ୍ଦେଶ୍ୟରେ ଗୋଡର୍ ପର୍ବ ପାଳନ କରେ ।

ଗଦବାମାନେ ବିଶ୍ୱାସ କରନ୍ତି ଯେ, ଗୋଡର ପର୍ବ ପାଳନ କରା ନ ଯିବା ପର୍ଯ୍ୟନ୍ତ ପୂର୍ବପୁରୁଷମାନେ ମୁକ୍ତି ପାଇବେ ନାହିଁ କି ପୁନର୍ଜନ୍ମ ଗ୍ରହଣ କରି ପାରିବେ ନାହିଁ ।

ଏହି ପର୍ବ ମାଘ ମାସରେ ଅନୁଷ୍ଠିତ ହୋଇଥାଏ । ପୂର୍ବପୁରୁଷଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ଓ ମହିଷୀ ବଳି ଦିଆଯାଏ ।

## : ଦ୍ୱିତୀୟ ଭାଗ :

# ମନ୍ଦିର ମାଳିନୀ ଓଡ଼ିଶା

—ଆର୍ଯ୍ୟ : ଆଦିବାସୀ ସଂସ୍କୃତିର ମିଳନ ତୀର୍ଥ—

(ସହାବସ୍ଥାନ ଚକ୍ର)

# : ଆର୍ଯ୍ୟ ଓ ଆଦିବାସୀ ସଂସ୍କୃତିର ସମ୍ମିଶ୍ରଣ :

ଏବେ ଯାହାକୁ ଆର୍ଯ୍ୟ ସଂସ୍କୃତି ଓ ସଭ୍ୟତା ବୋଲି କୁହାଯାଉଛି, ତାହା ଆର୍ଯ୍ୟ, ଆଦିବାସୀ ଓ ଦ୍ରାବିଡ଼ ସଂସ୍କୃତିର ସମ୍ମିଶ୍ରଣରେ ଗଠିତ ବୋଲି ଗବେଷକମାନଙ୍କର ମତ ।

ଆର୍ଯ୍ୟମାନେ ଯେତେବେଳେ ଭାରତକୁ ଆସିଲେ, ସେତେବେଳେ ସେମାନଙ୍କ ମଧ୍ୟରେ ପୁରୁଷମାନଙ୍କ ଅନୁପାତରେ ସ୍ତ୍ରୀ ଲୋକଙ୍କ ସଂଖ୍ୟା ଖୁବ୍ କମ୍ ଥିଲା । ଆର୍ଯ୍ୟ-ପୁରୁଷମାନେ ଅନାର୍ଯ୍ୟ କୁଳରେ ଜନ୍ମ ଲାଭ କରିଥିବା ସ୍ତ୍ରୀ ଲୋକମାନଙ୍କ ସଙ୍ଗରେ ବୈବାହିକ ଜୀବନ ଯାପନ କରିବାକୁ ଲାଗିଲେ । ସେତେବେଳେ ନିୟମ ଥିଲା ଯେ, ବ୍ରାହ୍ମଣ ପୁରୁଷ ଓ ଅନାର୍ଯ୍ୟ ସ୍ତ୍ରୀର ସଙ୍ଗମ ଫଳରେ ଯେଉଁ ସନ୍ତାନମାନେ ଭୂମିଷ୍ଠ ହେବେ, ସେମାନଙ୍କୁ ବ୍ରାହ୍ମଣ ସନ୍ତାନ ରୂପେ ଗ୍ରହଣ କରାଯିବ ।

ପୁରାଣରେ ଆସ୍ତିକ ନାମରେ ଜଣେ ପ୍ରସିଦ୍ଧ ଋଷି ଥିବାର ଜଣାଯାଏ । କିନ୍ତୁ ସେ ଅନାର୍ଯ୍ୟ ନାଗ ଜାତିର ଜଣେ ସ୍ତ୍ରୀ ଲୋକର ସନ୍ତାନ ବୋଲି କୁହାଯାଇଛି । ତାଙ୍କ ମାତା ଆର୍ଯ୍ୟ ପୁରୁଷଙ୍କୁ ବିବାହ କରିଥିବାରୁ ସେ ବ୍ରାହ୍ମଣ ରୂପେ ପରିଚିତ ହୋଇଥିଲେ ।

ଆର୍ଯ୍ୟମାନଙ୍କ ମଧ୍ୟରେ ପୁରୁଷମାନେ ପ୍ରାଧାନ୍ୟ ଲାଭ କରିଥିବାରୁ ପିତାର ଜାତି ଅନୁସାରେ ସନ୍ତାନର ଜାତି ସ୍ଥିର ହେଲା । କିନ୍ତୁ ଦ୍ରାବିଡମାନଙ୍କ ମଧ୍ୟରେ ମାଁର କୁଳ ଅନୁସାରେ ସନ୍ତାନମାନେ ସେମାନଙ୍କ ପରିଚିତି ଲାଭ କଲେ । ଏବେ ମଧ୍ୟ ଦକ୍ଷିଣ ଭାରତରେ ମାତୃପ୍ରାଧାନ୍ୟ ସମାଜର ପ୍ରଚଳନ ଅଛି । ବିବାହପରେ ପୁରୁଷ ତାର ସ୍ତ୍ରୀର ସଂଜ୍ଞା ଧାରଣ କରିଥାଏ ।

କୁହାଯାଏ ଯେ, ଆର୍ଯ୍ୟମାନେ ପ୍ରଥମେ ମାଛ ଖାଇବା, ଆର୍ଯ୍ୟମାନେ ଶଂଖା ଓ ସିନ୍ଦୂର ବ୍ୟବହାର କରିବାରେ ଅଭ୍ୟସ୍ତ ନ ଥିଲେ । ଏହା ସେମାନେ ଅନାର୍ଯ୍ୟ ଓ ଦ୍ରାବିଡ଼ମାନଙ୍କଠାରୁ ଶିଖିଲେ ଓ ନିଜ ସଂସ୍କୃତି ବା ଚଳଣିରେ ମିଶାଇ ନେଲେ ।

ବ୍ରାହ୍ମଣମାନେ ପ୍ରଥମେ ଶିବପୂଜା କରୁ ନଥିଲେ । ଶବର, କିରାତମାନେ ଶିବ ଓ ପାର୍ବତୀ ପୂଜା କରୁଥିଲେ । କୁହାଯାଏ ଯେ, ମୁନି ପତ୍ନୀମାନେ ଶିବଙ୍କ ରୂପ ଓ ଗୁଣରେ ମୁଗ୍ଧ ହୋଇ ଶିବ ପୂଜା କରିବା ଆରମ୍ଭ କରିଥିଲେ । ଏହିପରି ଭାବରେ ଆର୍ଯ୍ୟମାନଙ୍କ ମଧ୍ୟରେ ଶିବପୂଜାର ପ୍ରଚଳନ ହେଲା ।

ଅନେକ କ୍ଷେତ୍ରରେ ଅନାର୍ଯ୍ୟ ସ୍ତ୍ରୀମାନେ ଆର୍ଯ୍ୟ ପୁରୁଷମାନଙ୍କୁ ବିବାହ କରୁଥିଲେ । ସେହି ଅନାର୍ଯ୍ୟ ସ୍ତ୍ରୀମାନେ ବିବାହ କରିବା ପରେ ସେମାନଙ୍କ ଆରାଧ୍ୟ ଦେବ ଦେବୀଙ୍କ ପୂଜା ଛାଡ଼ି ପାରି ନଥିଲେ । ତେଣୁ ଆର୍ଯ୍ୟ ଘରେ ଅନାର୍ଯ୍ୟ ଦେବାଦେବୀ ପୂଜିତ ହେଲେ ।

ଆର୍ଯ୍ୟ ବ୍ରାହ୍ମଣମାନେ ବେଦଗାନ ବ୍ୟତୀତ ପୂଜା ଉପାସନା ବେଳେ ନୃତ୍ୟ ଗୀତ ପ୍ରତି ଧ୍ୟାନ ଦେଉ ନଥିଲେ । କିନ୍ତୁ ଅନାର୍ଯ୍ୟମାନେ ଶିବ ପୂଜା କରୁଥିଲେ ଓ ଓ ନୃତ୍ୟ ଗୀତ ମାଧ୍ୟମରେ ଦେବ ଆରାଧନା କରୁଥିଲେ । କ୍ରମେ ଆର୍ଯ୍ୟମାନେ ଅନାର୍ଯ୍ୟମାନଙ୍କ ଠାରୁ ନୃତ୍ୟ ଗୀତ ଶିକ୍ଷା କଲେ ଓ ଦେବ ଉପାସନା ବେଳେ ତାକୁ ପ୍ରୟୋଗ କଲେ ।

ଆର୍ଯ୍ୟମାନେ ମୃତ ବ୍ୟକ୍ତିର ଅସ୍ଥି ନେଇ ଗଙ୍ଗାନଦୀରେ ବିସର୍ଜନ କରିବା ଏକ ପୁଣ୍ୟ ଓ ପବିତ୍ର କର୍ମ ବୋଲି ବିବେଚନା କରୁଛନ୍ତି । କିନ୍ତୁ ଗଙ୍ଗା ନଦୀରେ ଅସ୍ଥି ବିସର୍ଜନ କରିବା ବୈଦିକ ପ୍ରଥା ନୁହେଁ । ଆଲୋଚକ ମାନେ କହନ୍ତି, ପ୍ରଥମେ ଆଦିବାସୀ ସାନ୍ତାଳମାନେ ଦାମୋଦର ନଦୀରେ ମୃତ ବ୍ୟକ୍ତିର ଅସ୍ଥି ବିସର୍ଜନ କରୁଥିଲେ । ଏହି ଅସ୍ଥି ବିସର୍ଜନ ପଦ୍ଧତିକୁ କାଳକ୍ରମେ ଆର୍ଯ୍ୟମାନେ ଗ୍ରହଣ କରିଥିଲେ ।

# : ଆର୍ଯ୍ୟ-ଅନାର୍ଯ୍ୟ ସଂସ୍କୃତିର ସହାବସ୍ଥାନ :

ଜୀବନ ମୂଲ୍ୟବୋଧର ସାମଗ୍ରିକତାହିଁ ସଂସ୍କୃତି । ଏହି ମୂଲ୍ୟବୋଧ ବିଭିନ୍ନ ମାଧ୍ୟମରେ ପ୍ରକାଶିତ ହୋଇଥାଏ । ସେହି ମାଧ୍ୟମମାନେ ହେଲେ, କଳା-ଧର୍ମ ବିଶ୍ୱାସ-ସାହିତ୍ୟ । ତେଣୁ ସଂସ୍କୃତିକୁ ଗୋଟିଏ ଜାତିର ଚେତନାର ସାମଗ୍ରୀକତା ବୋଲି ଧରାଯିବ । କଳା ହେଉଛି ତାର ପ୍ରକାଶର ମାଧ୍ୟମ । ତେଣୁ କଳା ଓ ସଂସ୍କୃତି ଉଭୟେ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଗୋଟିଏ କଳାର ଗମ୍ଭୀରତା ହେଲେ ଅନ୍ୟଟି ତାର ମହିମା ।

'ବିଜ୍ଞାନ' ଜୀବନକୁ ପ୍ରଭାବିତ କଲେ, 'କଳା' ପ୍ରଭାବିତ ଜୀବନର ଦୃଷ୍ଟିକୋଣର ସୂଚନା ଦେଇଥାଏ । ଏଇଠି ସଭ୍ୟତା ସହିତ ସଂସ୍କୃତିର ସଂବଧ ଆସିଥାଏ ।

ଇତିହାସ ମଣିଷର ଉତ୍ଥାନ ପତନର ବିବରଣୀ ଦିଏ । ସମୃଦ୍ଧ ମଣିଷ ଜାତିର ଐକ୍ୟ ଏବଂ ବୈଷମ୍ୟର ସୂଚନା ଦିଏ । ସମୟର ପରିବର୍ତ୍ତନ ଭିତରେ ମଣିଷର ବାହ୍ୟ ପରିଣତିର କାହାଣୀ କହେ । ଏହା ସଭ୍ୟତାର ବାହ୍ୟରୂପ ମାତ୍ର । କିନ୍ତୁ ଜୀବନ ପ୍ରତି ଦୃଷ୍ଟିକୋଣ ତଥା ମାନସିକ ବାତାବରଣ ହେଉଛି ଗୋଟିଏ ଜାତିର ସଂସ୍କୃତି ।

ସମୟର ସ୍ରୋତରେ ଗୋଟିଏ ଜାତିର କ୍ରମ ବିକାଶର ଚିତ୍ର ହେଲା ସଭ୍ୟତା । ସେହି ସଭ୍ୟତାର କ୍ରମୋନ୍ନତି ଭିତରେ ବର୍ଦ୍ଧିତ ଦୃଷ୍ଟିକୋଣ, ଜୀବନ ପ୍ରତି ବୌଦ୍ଧିକ ଚେତନାହିଁ ସଂସ୍କୃତି । କଳା ଏହି ଚେତନାର ବିଶୁଦ୍ଧ ପ୍ରକାଶ ।

ତେଣୁ ସଭ୍ୟତାକୁ ଶସ୍ୟକ୍ଷେତ୍ର ଧରିନିଆଗଲେ, ସଂସ୍କୃତି ହେବ ସେହି ଶସ୍ୟ ଏବଂ କଳାହେବ ଶସ୍ୟର ପୁଷ୍ପ ।

ମନେ ରଖିବାକୁ ହେବ, ଗୋଟିଏ ଦେଶର ସଂସ୍କୃତି ସେହି ଦେଶର ବାସିନ୍ଦା-ମାନଙ୍କର ଚଳଣୀ ଓ ଖାଦ୍ୟପେୟ ଉପରେ ନିର୍ଭର କରିଥାଏ । ଓଡ଼ିଶାରେ ବସବାସ କରୁଥିବା ଓଡ଼ିଆମାନଙ୍କର ଆଚରଣ, ଖାଦ୍ୟପେୟ, ଚଳଣୀ, ଭାବନା, ଚିନ୍ତାଧାରା ଓ ଚେତନାକୁ କେନ୍ଦ୍ର କରି ଓଡ଼ିଶାର ସଂସ୍କୃତି ବା ଓଡ଼ିଆ ସଂସ୍କୃତିକୁ ଚିହ୍ନଟ କରିବା ସମ୍ଭବ ।

ଏହି ସଂସ୍କୃତି ଆପେ ଆପେ ଗୋଟିଏ ଦିନରେ ବା ଗୋଟିଏ ବର୍ଷରେ ଗଢ଼ି ଉଠିନାହିଁ । ଶତ ଶତ ବର୍ଷର ଇତିହାସ, ଏକାଧିକ ସଭ୍ୟତାର ମିଶ୍ରଣ ଓ ଅନ୍ୟାନ୍ୟ ସଂସ୍କୃତିର ପୃଷ୍ଠଭୂମି ଉପରେ ଏହା ପ୍ରତିଷ୍ଠିତ । ଏହିଭଳି ବିଭିନ୍ନ ସଭ୍ୟତା ଓ ସଂସ୍କୃତିର ସଂସ୍ପର୍ଶରେ ଆସି, ସେମାନଙ୍କ ଭିତରେ ଥିବା କିଛି ବିଶିଷ୍ଟ ଗୁଣରେ ଆଂଶିକ ଭାବରେ ପ୍ରଭାବିତ ହୋଇ. ସେହି ସମସ୍ତ ଗୁଣମାନଙ୍କୁ ନିଜସ୍ୱ କରିନେଲେ, ପୂର୍ବରୁ ବିଦ୍ୟମାନ ନିଜସ୍ୱ ଆଚରଣ, ରୀତିନୀତି, ଚଳଣୀ, ଚିନ୍ତା ଓ ଚେତନାରେ କିଛି କିଛି ପରିବର୍ତ୍ତନ ସଂଘଟିତ ହେବା ସ୍ୱାଭାବିକ । ଆଜିର ଓଡ଼ିଆ ସଂସ୍କୃତି ଅତୀତ ଓ ବର୍ତ୍ତମାନର ମିଶ୍ରିତ ରୂପରେଖ ନେଇ ପ୍ରତିଷ୍ଠିତ ।

ଓଡ଼ିଶା ଏକ ଆଦିବାସୀ ବହୁଳ ରାଜ୍ୟ । ଆଦିବାସୀ ବହୁଳତାରେ ଏହା ଭାରତ-ବର୍ଷରେ ଦ୍ୱିତୀୟ ସ୍ଥାନ ଅଧିକାର କରିଛି । ଓଡ଼ିଆ ସଂସ୍କୃତି କହିଲେ ଆଜି ଆମେ ବୁଝୁଁ, ଆର୍ଯ୍ୟ ସଂସ୍କୃତି ଓ ଆଦିବାସୀ ସଂସ୍କୃତିର ମିଳିତ ରୂପରେଖ । ଆଦିବାସୀ ସଂସ୍କୃତି ସଙ୍ଗେ ଆର୍ଯ୍ୟ ସଂସ୍କୃତିର ମିଶ୍ରଣ ହୋଇ ଓଡ଼ିଆ ସଂସ୍କୃତି ପରିବର୍ତ୍ତିତ ଘଟ ଧାରଣ କରିଛି ।

ଏଠାରେ ଉଲ୍ଲେଖନୀୟ ଯେ, ଆର୍ଯ୍ୟମାନେ ଅନାର୍ଯ୍ୟମାନଙ୍କ ଭିତରେ ପଶି ସଭ୍ୟତା ଓ ସଂସ୍କୃତି କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରିଥିଲେ । ପରେ ପରେ ଆର୍ଯ୍ୟ ପ୍ରଭାବ ବିସ୍ତାରିତ ହେଲା ।

ଇତିହାସ ପୃଷ୍ଠାରୁ ଜଣାପଡ଼େ ଯେ, ଓଡ଼ିଶାରେ ବହୁ ପୂର୍ବକାଳରୁ ବସବାସ କରୁଥିବା ଆଦିମ ଅଧିବାସୀ ଅର୍ଥାତ୍ କନ୍ଧ, କୋଲ୍ହ, ଗଣ୍ଡ, ବିଞ୍ଝାଲ, ଶବର, ଓରାଂ, ମୁଣ୍ଡା, ସାନ୍ତାଳ, ଭୂୟାଁ, ହୋ, ପରଜା, ଗଦବା, କିଷାନ୍ ପ୍ରଭୃତି ସଂପ୍ରଦାୟ ଆର୍ଯ୍ୟମାନଙ୍କ ଦ୍ୱାରା ପରାଜିତ ହୋଇ ବିତାଡ଼ିତ ହୋଇଥିଲେ ଓ ନିଜକୁ ଆର୍ଯ୍ୟମାନଙ୍କ କବଳରୁ ରକ୍ଷା କରିବା ପାଇଁ ବନବାସୀ ଜୀବନ ଆଦରି ନେଲେ । ସେମାନଙ୍କୁ ଅନାର୍ଯ୍ୟ, ଅସଭ୍ୟ, ଅସୁର ପ୍ରଭୃତି ନାମରେ ନାମିତ କରାଗଲା ।

ଏହି ଅନାର୍ଯ୍ୟ ବା ଅସୁର ନାମରେ ନାମିତ ଆଦିମ ଅଧିବାସୀମାନଙ୍କର ସ୍ୱତନ୍ତ୍ର ଲିପି ଓ ସାହିତ୍ୟ ନ ଥିଲା । ତେଣୁ ସେମାନେ ନିଜକୁ ପ୍ରକାଶ କରି ପାରିଲେ ନାହିଁ ।

କିନ୍ତୁ ଆର୍ଯ୍ୟମାନଙ୍କ ଲିଖିତ ଭାଷା ଓ ସାହିତ୍ୟ ଥିଲା । ତେଣୁ ଏମାନେ ନିଜକୁ ଶ୍ରେଷ୍ଠ ପ୍ରତିପାଦନ କରିବା କ୍ରମରେ ସୁବିଧା ସୁଯୋଗ ଲାଭ କଲେ । ପୁଣି ଅନାର୍ଯ୍ୟ-

ମାନଙ୍କର କେତେକ ସାଂସ୍କୃତିକ ଚେତନା ଓ ଚିନ୍ତାଧାରକୁ ଅନୁକରଣ କରି ସେ ସବୁକୁ ନିଜର କରିନେଲେ ।

ଏବେ ଦକ୍ଷିଣ ଭାରତର ଦ୍ରାବିଡ ସଭ୍ୟତା ଆର୍ଯ୍ୟମାନଙ୍କର ପୂର୍ବବର୍ତ୍ତୀ ସଭ୍ୟତା ବୋଲି ପ୍ରମାଣିତ ହୋଇଛି । ସିନ୍ଧୁ ନଦୀର ଅବବାହିକାରେ ଭୂମି ଖନନ ଫଳରେ ମହେଞ୍ଜୋଦାରୋ ଓ ହରପ୍ପାରେ ଯେଉଁ ଅବଶେଷ ମିଳିଛି, ସେସବୁ ପ୍ରାଗ୍ ବୈଦିକ ସଭ୍ୟତା ବୋଲି ପ୍ରତ୍ନତତ୍ତ୍ୱବିଦ୍ ମାନେ ପ୍ରମାଣିତ କରିଅଛନ୍ତି । ଏହାକୁ ପ୍ରାଚୀନ ଶାବର୍ଣ୍ଣ, ଅସୁର ବା ତାମିଲ ସଭ୍ୟତାର ଭାରତୀୟ ଧାରା ବୋଲି ଗ୍ରହଣ କରାଯାଇଛି ।

ଆଦିବାସୀମାନଙ୍କର ଭାଷା, ସଙ୍ଗୀତ, ଲୋକକଥା ଓ ଲୋକଗୀତରେ କେତେକ ମୌଳିକତା ଦେଖା ଯାଏ ।

ଅଧୁନା ଆର୍ଯ୍ୟ ସମାଜରେ ପ୍ରଚଳିତ ଲିଙ୍ଗ ଓ ନାଗପୂଜା,. ପ୍ରକୃତି-ପୂଜକ ଆଦିବାସୀ-ମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା ।

ଆଦିବାସୀମାନଙ୍କ ମଧ୍ୟରୁ କେତେକ ସମ୍ପ୍ରଦାୟ 'ଅନ୍ଧାରୀ ପୂଜା' କରିଥାନ୍ତି । ଅର୍ଦ୍ଧ-ରାତିରେ ପୂଜକ ନଗ୍ନ ଅବସ୍ଥାରେ ଏହି ଅନ୍ଧାରୀ ଦେବୀଙ୍କୁ ପୂଜା କରେ । ପୂଜା ସାମଗ୍ରୀ ହେଲା ମଦ୍ୟ ଓ କଳା ରଙ୍ଗର ବୋଦା ।

ବୈଦିକ ସାହିତ୍ୟରେ ରାତ୍ରିସୂକ୍ତ ରହିଛି । ଉପନିଷଦମାନଙ୍କରେ ଉମା ଓ ହୈମବତୀଙ୍କର ନାମୋଲ୍ଲେଖ ଦେଖାଯାଏ । ରାତ୍ରିସୂକ୍ତରେ ଯେଉଁ ବର୍ଣ୍ଣନା ମିଳିଥାଏ, ସେଥିରୁ ଜଣାଯାଏ ଯେ, ସେ ଗାଢ଼ କୃଷ୍ଣବର୍ଣ୍ଣା ତଥା ଅଦ୍ଭୁତ ଶକ୍ତିର ଆଧାର ଅଟନ୍ତି । ତାଙ୍କୁ ଅଜ୍ଞେୟ ରୂପା ଭାବରେ ବର୍ଣ୍ଣନା କରାଯାଇଛି । ଏହା ଆଦିବାସୀମାନଙ୍କର ସେହି 'ଅନ୍ଧାରୀ ପୂଜା'ର ନମସ୍ୟ ଦେବୀ 'ଅନ୍ଧାରୀ ଦେବୀ'ଙ୍କର ଅନୁରୂପ ନୁହେଁ କି ? ପୁଣି ଶକ୍ତି ଉପାସନା, ପଞ୍ଚମ'କାର ପୂଜା ଓ ତନ୍ତ୍ର ସାଧନା ଏ ସମସ୍ତର ଆଧାର ହେଲେ ସେହି ଅନ୍ଧାରୀ ଦେବୀ ବା ଅଜ୍ଞେୟ ସ୍ୱରୂପା, ଶକ୍ତିମୟୀ ଦେବୀ ।

## : ଶ୍ରୀ ଜଗନ୍ନାଥ ମନ୍ଦିର :

ଓଡ଼ିଶାର ଶ୍ରୀକ୍ଷେତ୍ରରେ ବିରାଜିତ ଓଡ଼ିଆ ଜାତିର ଇଷ୍ଟଦେବ ଶ୍ରୀ ଜଗନ୍ନାଥଙ୍କ ପୃଷ୍ଠରେ ଦେହିପରି ଆଦିବାସୀ ସଂସ୍କୃତିର ପ୍ରଚ୍ଛନ୍ନ ପ୍ରଭାବ ରହିଛି । ଶବର ରାଜା ବିଶ୍ୱାବସୁଙ୍କ ନୀଳମାଧବ ଓ ଇଷ୍ଟଦେବ ଜଗନ୍ନାଥ ଏକ ଏବଂ ଅଭିନ୍ନ ଅଟନ୍ତି । ଏହା

କେବଳ ଜନ ପ୍ରବାଦ ହୋଇ ରହିଛି । ଏବେ ମଧ୍ୟ ଜଗନ୍ନାଥଙ୍କ ସେବକମାନଙ୍କ ମଧ୍ୟରେ ଶବର ରାଜାଙ୍କ ବଂଶଧରମାନେ ମହତ୍ତ୍ୱପୂର୍ଣ୍ଣ ସ୍ଥାନର ଅଧିକାରୀ ଅଟନ୍ତି ।

ସେହିପରି ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ବେଢ଼ା ମଧ୍ୟରେ ଶିବ, ବିମଳା, ଭୁବନେଶ୍ୱରୀ, କାଳୀ, ମଙ୍ଗଳା ପ୍ରମୁଖ ଦେବଦେବୀମାନେ ବୈଷ୍ଣବ, ଶାକ୍ତ, ଶୈବ, ବୌଦ୍ଧ, ଜୈନ, ଆର୍ଯ୍ୟ ଓ ଅନାର୍ଯ୍ୟ ଏ ସମସ୍ତ ଧର୍ମ ଧାରଣାର ସମନ୍ୱୟ ଭାବରେ ପ୍ରତିଷ୍ଠିତ ।

ଆଦିବାସୀମାନଙ୍କର ପୁରୋହିତ ଦିହାରୀ ବା ଦେହେରୀ ଅବ୍ରାହ୍ମଣ ଅଟନ୍ତି । ଶିବ ମନ୍ଦିରର ପୂଜକ ଭାବରେ ଏବେ ମଧ୍ୟ ଅବ୍ରାହ୍ମଣ ଅନାପତି ବା ମାଳୀ ପୁରୋହିତ ଭାବରେ ପୂଜା କରନ୍ତି ।

ଅଥର୍ବ ବେଦରେ ଯେଉଁ ତନ୍ତ୍ର ମନ୍ତ୍ର ବିଦ୍ୟାର ଚର୍ଚ୍ଚା କରାଯାଇଛି ତାହା ଶାବରୀ ବିଦ୍ୟା ଅଟେ । ଏ ବିଦ୍ୟା ଆଦିବାସୀମାନଙ୍କ ନିକଟରୁ ହିନ୍ଦୁ ଆର୍ଯ୍ୟମାନେ ଆହରଣ କରିଥିଲେ ଓ ନୂତନ ଆର୍ଯ୍ୟ ସଂସ୍କରଣ ରୂପରେ ଅଥର୍ବ ବେଦରେ ସଂଯୋଗ କରିଥିଲେ । ଏବେ ମଧ୍ୟ ଆଦିବାସୀ ଦେହେରୀ, ଆଦିବାସୀମାନଙ୍କୁ ଆଗତ ଭବିଷ୍ୟତ ବାଣୀ ଶୁଣାଇଥାଏ । ସାଧାରଣ ମଣିଷ ଦେହରେ 'କାଳସୀ' ପ୍ରବେଶ କରି ବହୁ ଭବିଷ୍ୟତ ବାଣୀ ଶୁଣାଇଥାଏ । ଏ ବିଦ୍ୟା 'ଗୁଣୀ' ବିଦ୍ୟାରେ ପରିଣତ ହୋଇଥିବା ଜଣାଯାଏ । ସ୍ତମ୍ଭନ-ମୋହନ-ବଶୀକରଣ ତଥା ଗୁଣୀ-ଗାରେଡ଼ି, ତନ୍ତ୍ର ମନ୍ତ୍ର, ସର୍ପ ବିଦ୍ୟା ପ୍ରଭୃତି ଅଲୌକିକ ସାଧନାମାନ ଏବେ ମଧ୍ୟ ଆଦିବାସୀମାନଙ୍କ ମଧ୍ୟରେ ପ୍ରଚଳିତ ।

ଏହିପରି ଭାବରେ ଆର୍ଯ୍ୟ ସଂସ୍କୃତି ସଙ୍ଗରେ ଅନାର୍ଯ୍ୟ ସଂସ୍କୃତିର ସମ୍ମିଶ୍ରଣ ଘଟିଛି ।

ଓଡ଼ିଶାର ଶ୍ରୀ ଜଗନ୍ନାଥ ଏହି ମିଶ୍ରିତ ସଂସ୍କୃତିର ପୃଥିବୀ ପ୍ରସିଦ୍ଧ ପ୍ରତୀକ ରୂପେ ବିଦ୍ୟମାନ ।

## : ଶ୍ରୀ ଲିଙ୍ଗରାଜ ମନ୍ଦିର :

ଲିଙ୍ଗରାଜ ମନ୍ଦିରରେ ବ୍ରାହ୍ମଣ ପୂଜକ ନିଯୋଜିତ ହୁଅନ୍ତି ନାହିଁ । ସାଧାରଣତଃ ଅବ୍ରାହ୍ମଣ ବା ମାଳୀ (ମାଳାକାର) ଜାତିର ଲୋକ ଏହାର ପୂଜାରୀ ହୋଇଥାନ୍ତି ।

ଏଥିରୁ ଜଣାପଡ଼ିବ ଯେ, ଏହି ଲିଙ୍ଗ ପୂଜା ଆଦିମ ଅଧିବାସୀମାନଙ୍କ ସଂସ୍କୃତିରୁ ଆସିଛି । ଏହା ଆର୍ଯ୍ୟ ସଂସ୍କୃତିରୁ ଉଦ୍ଭବ ହୋଇଥିଲେ ଲିଙ୍ଗ-ମନ୍ଦିର ବା ଶିବ ମନ୍ଦିରରେ ବ୍ରାହ୍ମଣ ପୂଜକ ନିଯୁକ୍ତି ପାଇଥାନ୍ତେ ।

ସୋମବଂଶୀ ଗୁପ୍ତମାନେ ବହୁବର୍ଷ ଧରି କୋଶଳ ଓ ଉତ୍କଳ ଦେଶ ଶାସନ କରୁଥିଲେ । ଏହାପରେ ଜନ୍ମେଜୟ 'କେଶରୀ' ବା 'ସିଂହ' ନାମରେ ନିଜ ବଂଶର ପରିଚୟ ଦେଇ ଉତ୍କଳର ଶାସକ ହେଲେ ।

ଏହା ପୂର୍ବରୁ ଗୁପ୍ତ ସମ୍ରାଟମାନେ ବ୍ରାହ୍ମଣ ଧର୍ମାବଲମ୍ବୀ ଥିଲେ । ସେମାନେ ମଗଧରେ ବ୍ରାହ୍ମଣ ଧର୍ମର ପ୍ରସାର କରାଇବା ସଙ୍ଗେ ସଙ୍ଗେ ଉତ୍କଳରେ ଏହି ଧର୍ମର ବିକାଶ ସାଧନ କରିଥିଲେ ।

କେଶରୀ ରାଜାମାନେ ଶୈବ ଥିଲେ । ସୁତରାଂ କେଶରୀ ରାଜତ୍ୱ କାଳରୁ ପୂର୍ବ ପ୍ରଚଳିତ ବ୍ରାହ୍ମଣ ଧର୍ମ ଶୈବ ଧର୍ମ ଆକାରରେ ଉତ୍କଳରେ ପ୍ରସାରିତ ହେଲା । ସେତେବେଳେ ଶୈବ ଧର୍ମବାଦ ବୌଦ୍ଧ ଧର୍ମରେ ପରିଣତ ହୋଇଥିଲା ।

ଜନ୍ମେଜୟଙ୍କ ପରେ ତାଙ୍କ ପୁତ୍ର ଯଯାତି କେଶରୀ ଉତ୍କଳ ସିଂହାସନ ଆରୋହଣ କରିଥିଲେ । ସେ 'ଅଙ୍କ' ସାଲର ଆରମ୍ଭ କରିଥିଲେ । ଭାଦ୍ରବ ମାସ ଶୁକ୍ଳ ଦ୍ୱାଦଶୀଠାରୁ ଏହାର ଆରମ୍ଭ ହୋଇଥାଏ ।

କେଶରୀମାନେ ଶୈବ ଥିବାରୁ ଉତ୍କଳରେ ଶିବ ଉପାସନା ପ୍ରଚଳନ କରିବା ଏମାନଙ୍କର ପରମ ଓ ପ୍ରଧାନ କାର୍ଯ୍ୟ ଥିଲା ।

ଭୁବନେଶ୍ୱର ଉତ୍କଳର ରାଜଧାନୀ ରୂପେ କେଶରୀ ରାଜତ୍ୱ ପୂର୍ବରୁ ପ୍ରସିଦ୍ଧ ଥିଲା । ପୁଣି ଜୈନ ଓ ବୌଦ୍ଧମାନଙ୍କର ଧର୍ମ କେନ୍ଦ୍ର ମଧ୍ୟ ଭୁବନେଶ୍ୱର ନିକଟରେ ଥିଲା । ତେଣୁ କେଶରୀମାନେ ଭୁବନେଶ୍ୱରକୁ ଶିବ କ୍ଷେତ୍ରରୂପେ ଖ୍ୟାତ କରାଇବାକୁ ଉପଯୁକ୍ତ କ୍ଷେତ୍ର ବୋଲି ସ୍ଥିର କଲେ ।

ଯଯାତି ଭଗ୍ନ ଅବସ୍ଥାରେ ଥିବା ଜଗନ୍ନାଥ ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ କରି ରାଜତ୍ୱର ଶେଷାଂଶରେ ବର୍ତ୍ତମାନର ଲିଙ୍ଗରାଜ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରାଇଥିଲେ । ଉତ୍କଳର ପ୍ରଧାନ ବୌଦ୍ଧ ଓ ଜୈନ କେନ୍ଦ୍ର, ପ୍ରଧାନ ଶିବ କ୍ଷେତ୍ରରେ ପରିଣତ ହେଲା ।

ଯଯାତିଙ୍କ ପରେ ତାଙ୍କ ପୁତ୍ର ଲଲାଟେନ୍ଦୁ କେଶରୀ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ନିର୍ମାଣ କାର୍ଯ୍ୟ ସମାପ୍ତ କରିଥିଲେ । ଜଗନ୍ନାଥ ମନ୍ଦିର ପରି ଲିଙ୍ଗରାଜ ମନ୍ଦିରରେ ମଧ୍ୟ ଅନ୍ନ ମହାପ୍ରସାଦର ବ୍ୟବସ୍ଥା ହେଲା ।

ବ୍ରାହ୍ମଣ୍ୟ ଧର୍ମର ସଂସ୍କାର କାଳରେ ଲିଙ୍ଗପୂଜା ବା ଶିବଙ୍କୁ ବ୍ରାହ୍ମଣ୍ୟ ଦେବତାରୂପେ ଗ୍ରହଣ କରାଗଲା । ପୁଣି ବ୍ରହ୍ମା, ବିଷ୍ଣୁଙ୍କ ସଙ୍ଗରେ ଶିବ ବା ଲିଙ୍ଗ ଦେବତାଙ୍କୁ ତ୍ରିଦେବ ବା ତ୍ରିନାଥ ବୋଲି ପରିକଳ୍ପନା କରାଗଲା । ଏହିପରି ଭାବରେ ଆର୍ଯ୍ୟ, ଅନାର୍ଯ୍ୟ ସଭ୍ୟତା ଓ ସଂସ୍କୃତିର ସହାବସ୍ଥାନ ଘଟିଲା ।

## : ବେଦବ୍ୟାସ :

ଅଧୁନା ସୁନ୍ଦରଗଡ଼ ଜିଲ୍ଲା ଅନ୍ତର୍ଭୁକ୍ତ ବେଦବ୍ୟାସ ତୀର୍ଥ ପାନପୋଷ ଷ୍ଟେସନ ନିକଟରେ ଅବସ୍ଥିତ । ବେଦବ୍ୟାସ ଠାରେ ଶଙ୍ଖ ଓ କୋଇଲ ଦୁଇ ନଦୀ ଏକାଠି ମିଶି ବ୍ରାହ୍ମଣୀ ନାମ ଧାରଣ କରିଛି ।

ଦୁଇନଦୀର ସଙ୍ଗମ ସ୍ଥଳୀରେ ଶଙ୍ଖନଦୀର ପଶ୍ଚିମ ପଟରେ ବେଦବ୍ୟାସ ପାହାଡ଼ ରହିଛି । ଏହି ପାହାଡ଼ରେ 'ବେଦବ୍ୟାସ ଗୁମ୍ଫା' ଅବସ୍ଥିତ । ସେଇଠି ପୁରାଣ ପ୍ରସିଦ୍ଧ ବେଦବ୍ୟାସ ଋଷିଙ୍କର ଆଶ୍ରମ ଥିଲା ବୋଲି ଜନଶ୍ରୁତି ରହିଛି ।

ବେଦବ୍ୟାସ ପାହାଡ଼ ଉପରେ 'ଶିବ ମନ୍ଦିର' ରହିଛି । ଶିବ ଚତୁର୍ଦ୍ଦଶୀ ଦିନ ଏଠାରେ ଏକ ବିରାଟ ମେଳା ହୋଇଥାଏ ।

ବେଦବ୍ୟାସର ଚତୁର୍ଦ୍ଦିଗରେ ଆଦିମ ଅଧିବାସୀମାନେ ବାସ କରନ୍ତି । ବ୍ରାହ୍ମଣୀ ନଦୀ ସେମାନଙ୍କ ପାଇଁ ଏକ ପବିତ୍ର ନଦୀ ଅଟେ । ସେମାନେ ବ୍ରାହ୍ମଣୀ ନଦୀରେ ଅସ୍ଥି ପ୍ରବାହ କରନ୍ତି ।

କଥିତ ଅଛି, ପୂର୍ବକାଳରେ ଋଷି ପରାଶରଙ୍କୁ ଥରେ ଏକ କୈବର୍ତ୍ତ ବାଳିକା 'ସତ୍ୟବତୀ' ନଦୀ ପାରି କରାଇ ଦେଉଥିଲା । ସେହି କୈବର୍ତ୍ତ ବାଳିକାର ରୂପ ଯୌବନ ପ୍ରତି ଆସକ୍ତ ହୋଇ ଋଷି ପରାଶର ମଝି ନଈରେ ତାକୁ ସମ୍ଭୋଗ କଲେ ଓ କାମପ୍ରବୃତ୍ତି ଚରିତାର୍ଥ କଲେ । ସେହି କାର୍ଯ୍ୟ ଅଦୃଶ୍ୟରେ ସାଧନ କରିବା ନିମନ୍ତେ କୁହୁଡ଼ି ସୃଷ୍ଟି କରିଥିଲେ ।

ଏହି କୈବର୍ତ୍ତ କନ୍ୟା ସତ୍ୟବତୀ ଗର୍ଭରୁ ମହାଭାରତ ରଚୟିତା ବେଦବ୍ୟାସଙ୍କର ଜନ୍ମ ହୋଇଥିଲା । ପ୍ରବାଦ ଅଛି, ଋଷି ପରାଶର ସେହି କୈବର୍ତ୍ତ ବାଳିକାକୁ ତପଃ ପ୍ରଭାବରେ 'ବ୍ରାହ୍ମଣୀ'ରେ ପରିଣତ କରିଥିବାରୁ ଶଙ୍ଖ କୋଇଲର ସଙ୍ଗମ ସ୍ଥଳୀରୁ ତାହା ବ୍ରାହ୍ମଣୀ ନଦୀରେ ପରିଣତ ହେଲା ।

ବେଦବ୍ୟାସ ତୀର୍ଥ ଏହିପରି ଭାବରେ ଭାବରେ ଆର୍ଯ୍ୟ ଓ ଆଦିବାସୀ ସଂସ୍କୃତିର ମିଳନ ତୀର୍ଥ ବା ମିଳନ ପ୍ରତୀକ ଭାବରେ ଦଣ୍ଡାୟମାନ ।

# କପିଳେଶ୍ୱର ମନ୍ଦିର ଓ ଚଉଦାଇ ମନ୍ଦିର : ଚଉଦା

ପୂର୍ବତନ ସୋନପୁର ଷ୍ଟେଟ ଅନ୍ତର୍ଗତ ଚଉଦା ଗ୍ରାମରେ କପିଳେଶ୍ୱର ବା ଶିବ ମନ୍ଦିର ରହିଛି । ଅଧୁନା ଏହା ବଲାଙ୍ଗୀର ଜିଲ୍ଲାର ଅଂଶ ହୋଇ ରହିଛି ।

ଚଉଦା ଗ୍ରାମର ଗୋଟିଏ ପାହାଡର ଶିଖର ଦେଶରେ ଏହି ପ୍ରସିଦ୍ଧ ମନ୍ଦିର ବିଦ୍ୟମାନ । ଏଠାରେ ଲିଙ୍ଗ ପୂଜା କରାଯାଏ । ପ୍ରବାଦ ଅଛି ଯେ, ଅନଙ୍ଗଭୀମ ଦେବ ଦୁରାରୋଗ୍ୟ କୁଷ୍ଠ ରୋଗରୁ ମୁକ୍ତିଲାଭ କରିବା ନିମନ୍ତେ ଏହି ଶିବ ମନ୍ଦିର ନିର୍ମାଣ କରିଥିଲେ । ଏଠାରେ ମଧ୍ୟ ଅବ୍ରାହ୍ମଣ ଝୋରାପଣ୍ଡାମାନେ ମନ୍ଦିର ସେବକ କର୍ମରେ ନିଯୁକ୍ତ ଅଛନ୍ତି । ଏ ମନ୍ଦିର ଦ୍ୱିତୀୟ ଅନଙ୍ଗଭୀମ ଦେବଙ୍କ ( ଖ୍ରୀଷ୍ଟାବ୍ଦ ୧୨୧୧-୧୨୩୮ ) ଦ୍ୱାରା ନିର୍ମିତ ହୋଇଥିବା ପ୍ରକାଶ ।

ଚଉଦାର ଶିବଲିଙ୍ଗ ବେଲପତ୍ର ଓ ପୁଷ୍ପରେ ବେଶ ହୁଅନ୍ତି । ଏ ଅଞ୍ଚଳର ଲୋକମାନେ ବିଶ୍ୱାସ କରନ୍ତି, ଏହି ବେଲପତ୍ର ଓ ପୁଷ୍ପ ମଣ୍ଡିତ ଶିବ ବେଶ ନିକଟରୁ ଦେଖା ଯାଏନାହିଁ, କିନ୍ତୁ ପାଞ୍ଚକୋଶ ଦୂରରୁ ଦେଖାଯାଏ । ଶିବରାତ୍ରୀ, ଦୁର୍ଗାପର୍ବ ଓ ଚନ୍ଦ୍ର ଗ୍ରହଣ ଦିନ ଏଠାରେ ମେଳା ବସେ ।

ଚଉଦାର କପିଳେଶ୍ୱରଙ୍କ ମନ୍ଦିର ବ୍ୟତୀତ, ଅଧିଷ୍ଠାତ୍ରୀ ଦେବୀ ଚଉଦାଈଙ୍କ ମନ୍ଦିର ମଧ୍ୟ ରହିଛି ।

ଚଉଦା ନିକଟରେ ଇତିହାସ ପ୍ରସିଦ୍ଧ କୋଶଳର ରାଜଧାନୀ 'ବନୀତପୁର' ବା 'ବିନିକା' ସହର ମହାନଦୀ କୂଳରେ ଅବସ୍ଥିତ । ପୁଣି ତରାପୁର ଦୁର୍ଗର ଧ୍ୱଂସାବଶେଷ, ଏବେ ମଧ୍ୟ ତରାପୁର-ଗଡ ନାମକ ସ୍ଥାନରେ ରହିଛି । ଏଠାରେ ପୂର୍ବତନ ରାଜା ଓ ଶାସକମାନଙ୍କର ଅଭେଦ୍ୟ ଦୁର୍ଗ ଥିଲା ।

ଚଉଦାର ଚଉଦାଈ ମନ୍ଦିରରେ ପ୍ରସିଦ୍ଧ 'କଳସି' ଯାତ୍ରା ଅନୁଷ୍ଠିତ ହୋଇଥାଏ । ଶତାଧିକ କାଳସୀ ଏଠାକୁ ଦୂର ଦୂରାନ୍ତରୁ ଆସି ସମବେତ ହୋଇଥାନ୍ତି । ଏହି ସମୟରେ ଠାକୁରାଣୀଙ୍କ ନିକଟରେ ବଳି ପଡ଼ିଥାଏ । ଏତଦ୍ ଉପଲକ୍ଷେ ଏକ ବିରାଟ ଯାତ୍ରା ଆୟୋଜନ ହୋଇଥାଏ। ଏ ଯାତ୍ରା କାର୍ତ୍ତିକ ଶୁକ୍ଳ ଦଶମୀ ଦିନ ଅନୁଷ୍ଠିତ ହୋଇଥାଏ । ଚଉଦେଇ ମୂର୍ତ୍ତି ପଞ୍ଚମ ବା ଷଷ୍ଠ ଖ୍ରୀଷ୍ଟାବ୍ଦରେ ସ୍ଥାପିତ ବୋଲି କୁହାଯାଏ ।

କଳସି ଦେବତାମାନେ ଆଦିବାସୀ ସମ୍ପ୍ରଦାୟର ।

ଏହି ପୂଜା ଓ ମେଳାରେ ଆଦିବାସୀ ଓ ଅଣଆଦିବାସୀ ସମ୍ପ୍ରଦାୟର ଆବାଳବୃଦ୍ଧ-ବନିତା ଯୋଗ ଦେଇଥାନ୍ତି ।

ଚଉଦା ଗ୍ରାମ ଏହି ଦୃଷ୍ଟିରୁ ଆଦିବାସୀ ଓ ଅଣଆଦିବାସୀମାନଙ୍କର ଅନ୍ୟତମ ତୀର୍ଥ କ୍ଷେତ୍ରରେ ପରିଣତ ହୋଇଛି ।

## : ନୃସିଂହନାଥ :

ନୃସିଂହନାଥର ଅନ୍ୟନାମ 'ପାପକ୍ଷୟ ଘାଟ', 'ପାପହରଣ' ବା 'ହରଣ ପାପ' । ଏହା ସମ୍ବଲପୁର ଜିଲ୍ଲାର ଅନ୍ୟତମ ପ୍ରଧାନ ତୀର୍ଥ ।

ଏ ତୀର୍ଥ ୩୨୩୪ ଫୁଟ ଉଚ୍ଚତା ବିଶିଷ୍ଟ ଗନ୍ଧମାର୍ଦ୍ଦନ ପାହାଡ଼ ଉପରେ ଅବସ୍ଥିତ । ଯାହା ପାଟଣା ଓ ସମ୍ବଲପୁର ଜିଲ୍ଲାର ସୀମା ଉପରେ ରହିଛି ।

କିମ୍ବଦନ୍ତୀ ଅଛି, ଏହିଠାରେ କପିଳ ଋଷିଙ୍କ ଆଶ୍ରମ ଥିଲା ପୁଣି ମହାଭାରତର ପଂଚପାଣ୍ଡବ ଓ ରାମାୟଣର ରାମ-ଲକ୍ଷ୍ମଣ-ସୀତା ଏଠାରେ କିଛିକାଳ ଅବସ୍ଥାନ କରିଥିଲେ ।

ବୈଶାଖ ମାସର ନୃସିଂହ ଚତୁର୍ଦ୍ଦଶୀ ଦିନ ତଥା ସୂର୍ଯ୍ୟପରାଗଣ ଓ ଚନ୍ଦ୍ରଗ୍ରହଣ ଦିନ ଏଠାରେ ଏକ ବଡ ମେଳା ଅନୁଷ୍ଠିତ ହୁଏ ।

ଲକ୍ଷ୍ମଣ ମିଶ୍ରଙ୍କ ଦ୍ୱାରା ରଚିତ 'ନୃସିଂହ ମାହାତ୍ମ୍ୟ' ଗ୍ରନ୍ଥରୁ ଏହି ତୀର୍ଥ ସମ୍ପର୍କରେ ନିମ୍ନଲିଖିତ ବିବରଣୀ ମିଳିଥାଏ ।

''ବୈଜଳରାଜ (ପାଟଣାର ପଂଚମ ରାଜା) ତୀର୍ଥ ଦର୍ଶନ ନିମନ୍ତେ ଆସି ଗନ୍ଧଗିରିର ପରପୂର୍ତ୍ତୀ ଗ୍ରାମରେ ଏକ ଦୁର୍ଗ ନିର୍ମାଣ କରିଥିଲେ । ଦୁର୍ଗର ନାମ ବୈଜଳଗଡ଼ । ବୈଜଳଗଡ ଗ୍ରାମରେ ସାତଶହ ବ୍ରାହ୍ମଣୀ ଥିଲା ଓ ଛତିଶ ପାଟକ ଥିଲେ ।

କବି ଯୋଗଦାସ ବୈଜଳରାଜଙ୍କ ଉପଦେଶ କ୍ରମେ ନୃସିଂହ ଟିପ୍ପଣୀ ଲେଖିଥିଲେ । ତାରି ଉପରେ ନୃସିଂହ ମାହାତ୍ମ୍ୟ ଗ୍ରନ୍ଥ ରଚିତ ହୋଇଥିଲା ।

ସୁବାହୁ ବନରେ ଉତ୍ତଙ୍କ ମୁନି ସପତ୍ନୀ ବାସ କରୁଥିଲେ ।

ରାବଣ ଉତ୍ତଙ୍କ ମୁନିଙ୍କ କନ୍ୟା ମାଳତୀଙ୍କୁ ବଳତ୍କାର ହରଣ କଲେ ।

ଗଣେଶଙ୍କ ଶାପଭ୍ରଷ୍ଟ ବ୍ରହ୍ମର୍ଷି ଯମ ଇନ୍ଦୁର ରୂପ ଧାରଣ କରି 'ଯମଇନ୍ଦୁର' ନାମ ପାଇଥିଲେ । ସେ ମଧ୍ୟ ମାଳତୀଙ୍କୁ ବଳତ୍କାର ହରଣ କଲେ ।

ରାବଣ ଓ ଯମ-ଇନ୍ଦୁର ଉଭୟଙ୍କ ଔରସରେ ମାଳତୀ 'ମୂଷିକ' ନାମକ ଏକ ଦୈତ୍ୟକୁ ପ୍ରସବ କଲେ । ମୂଷିକ ଜନ୍ମ ହେବା ପରେ ପରେ କ୍ଷୁଧାତୁର ହୋଇ ନିଜ ମାତାଙ୍କୁ ଭକ୍ଷଣ କଲା । ସେ ଉଗ୍ର ତପସ୍ୟା କରି ଶିବଙ୍କ ପାଖରୁ ଅମର ବର ଲାଭ କଲା । କ୍ରମେ ମୂଷିକର ଅତ୍ୟାଚାରରେ ଦେବତାମାନେ ବ୍ୟତିବ୍ୟସ୍ତ ହୋଇ ଦୁର୍ଗାଙ୍କର ଶରଣ ପଶିଲେ ।

ଦୁର୍ଗା ଦେବତାମାନଙ୍କ ପକ୍ଷ ସମର୍ଥନ କରିବାରୁ ମୂର୍ତ୍ତିକ ଓ ଦୁର୍ଗାଙ୍କ ମଧ୍ୟରେ ଯୁଦ୍ଧହେଲା । ଦୈତ୍ୟ ମୂର୍ତ୍ତିକ ସେହି ଯୁଦ୍ଧରେ ଦୁର୍ଗାଙ୍କୁ ପରାସ୍ତ କଲା । ଏହାଦେଖି ଦେବତାମାନେ ଭୟରେ ବିଷ୍ଣୁଙ୍କର ଶରଣାପନ୍ନ ହେଲେ ।

ସେତେବେଳେ ବିଷ୍ଣୁ ରାମଚନ୍ଦ୍ରଙ୍କ ଅବତାର ଗ୍ରହଣ କରିଥିଲେ ।

ରାମଚନ୍ଦ୍ର ବ୍ୟାଘ୍ର ରୂପରେ ଦୈତ୍ୟଙ୍କୁ ଗୋଡ଼ାଇବାରୁ, ଦୈତ୍ୟ ମୂର୍ତ୍ତିକ ରୂପ ଧରି ନୃସିଂହନାଥ ପାହାଡ଼ର ଏକ ସୁଡ଼ଙ୍ଗ ପଥରେ ପାତାଳ ପୁରକୁ ପ୍ରବେଶ କଲା ।

ଏହା ଦେଖି ରାମଚନ୍ଦ୍ର ବ୍ୟାଘ୍ରରୂପ ଛାଡ଼ି ମାର୍ଜାର ରୂପ ଧାରଣ କରି ନୃସିଂହନାଥ ପାହାଡର ସେହି ସୁଡ଼ଙ୍ଗ ପଥକୁ ଜଗି ରହିଲେ ।

ସେହି ମାର୍ଜାର ରୂପୀ ରାମଚନ୍ଦ୍ର ଏବେ ମଧ୍ୟ ସୁଡ଼ଙ୍ଗ ମୁହଁରେ ଜଗି ରହିଛନ୍ତି । ତେଣୁ ନୃସିଂହନାଥ ତୀର୍ଥରେ ପରିଣତ ହୋଇଛି ।

ମାର୍ଜାରରୂପୀ ରାମଚନ୍ଦ୍ରଙ୍କ ପୂଜା, ଅନାର୍ଯ୍ୟ ବା ଆଦିବାସୀ ସଂସ୍କୃତି ଓ ଆର୍ଯ୍ୟ ହିନ୍ଦୁ ସଂସ୍କୃତିର ପ୍ରତୀକ ମାତ୍ର । ତେଣୁ ନୃସିଂହନାଥ ତୀର୍ଥ, ଆର୍ଯ୍ୟ ଅନାର୍ଯ୍ୟ ସଂସ୍କୃତିର ମିଳନ ତୀର୍ଥ କହିଲେ ଅତ୍ୟୁକ୍ତି ହେବନାହିଁ ।

ବୌଦ୍ଧ ସନ୍ନ୍ୟାସୀ ନାଗାର୍ଜ୍ଜୁନ ଏଠାରେ ତାଙ୍କର ପ୍ରସିଦ୍ଧ ବିହାର ପ୍ରତିଷ୍ଠା କରିଥିବାର କୁହାଯାଏ ।

## : ହରିଶଙ୍କର :

ଏହା ଗନ୍ଧମାର୍ଦ୍ଦନ ପାଦଦେଶରେ ଅବସ୍ଥିତ ।

ହରିଶଙ୍କର ଠାରୁ ନୃସିଂହନାଥକୁ ଏକ ବିପଦ ସଙ୍କୁଳ ଗିରିପଥ ରହିଛି ।

ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ ବା ନୃସିଂହ ଚତୁର୍ଦ୍ଦଶୀ ଦିନ ଅନେକ ଯାତ୍ରୀ ନୃସିଂହନାଥକୁ ଏହି ଗିରିପଥ ଦେଇ ଯିବା ଆସିବା କରିଥାନ୍ତି ।

ହରିଶଙ୍କର ଏକ ପବିତ୍ର ଶିବ ମନ୍ଦିର ଅଟେ ।

ଏହି ମନ୍ଦିର ପାଟଣା ରାଜା ବୈଜଳ ଦେବଙ୍କ ରାଣୀ ଦୁର୍ଲଭ ଦେବୀ ନିର୍ମାଣ କରିଥିବା କୁହାଯାଏ ।

ଏଠାକୁ ଶିବରାତ୍ରୀ ଓ ବୈଶାଖ ଚତୁର୍ଦ୍ଦଶୀ ଦିନ ବହୁ ଯାତ୍ରୀ ଆସିଥାନ୍ତି ଓ ଦେବଦର୍ଶନ କରି ପୁଣ୍ୟ ଅର୍ଜନ କରନ୍ତି ।

ହରିଶଙ୍କର ନାମରୁ ହରି ଓ ଶଙ୍କର ଉଭୟ ଦେବଙ୍କର ମିଳନ ସଙ୍କେତ ମିଳିଥାଏ । ଆର୍ଯ୍ୟ ଦେବତା ହରି ବା ବିଷ୍ଣୁ ଓ ଅନାର୍ଯ୍ୟ ଦେବତା ଶଙ୍କର ବା ମହାଦେବଙ୍କ ଏହା ଏକ ମିଳନ ପୀଠ ।

ଏଠାକାର ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ମନୋହର ଓ ଏହାକୁ ବଲାଙ୍ଗୀର ଜିଲ୍ଲାର ଗ୍ରୀଷ୍ମ-ନିବାସ କୁହାଯାଇପାରେ ।

## : ରାଣୀପୁର ଝରିଆଲ :

ବଲାଙ୍ଗୀର ସହର ଠାରୁ ୧୧୬ କିଲୋମିଟର ଦୂରରେ ପ୍ରସିଦ୍ଧ ରାଣୀପୁର ଝରିଆଲ ଅବସ୍ଥିତ । ସ୍ଥାନଟିର ଐତିହ୍ୟ ସମ୍ବନ୍ଧରେ ଗବେଷଣା କଲେ ଜଣାପଡେ ଯେ ଏସ୍ଥାନ ଏକଦା ଜୈନ, ବୁଦ୍ଧ, ଶୈବ, ଶାକ୍ତ, ବୈଷ୍ଣବମାନଙ୍କର ପ୍ରଧାନ ଧର୍ମପୀଠ ଥିଲା ।

ଏଠାରେ ବୌଦ୍ଧମୂର୍ତ୍ତି, ସୋମେଶ୍ୱର ଶିବ ମନ୍ଦିର, ଚଉଷଠି ଯୋଗିନୀ ମନ୍ଦିର, ଇନ୍ଦ୍ରଲାଥ ବିଷ୍ଣୁ ମନ୍ଦିର ପ୍ରଭୃତି ଭଗ୍ନପ୍ରାପ୍ତ ଅବସ୍ଥାରେ ଦେଖିବାକୁ ମିଳିଥାଏ ।

ପ୍ରତ୍ନତାତ୍ତ୍ୱିକ ଖନନ ଫଳରେ ଏଠାରୁ ପ୍ରସ୍ତର ଓ ପ୍ରାଚୀନ ଇଟା ନିର୍ମିତ ମନ୍ଦିରର ଭଗ୍ନାବଶେଷ ମିଳିଛି ।

ପ୍ରସିଦ୍ଧ ଚଉଷଠୀ ଯୋଗିନୀ ମନ୍ଦିର ତାନ୍ତ୍ରିକମାନଙ୍କର ପ୍ରଧାନ ପୀଠ । ବୃଜ୍ରଯାନ ଧର୍ମ ଯେତେବେଳେ ପ୍ରବଳ ଥିଲା, ସେତେବେଳେ ଓଡ଼ିଶା ଏହାର ପ୍ରଧାନ କ୍ଷେତ୍ରରୂପେ ବିବେଚିତ ହୋଇଥିଲା । କାପାଳିକ ଧର୍ମ ନିର୍ବିକ୍ଷେପରେ ପୂଜା କରିବା, ଶ୍ମଶାନରେ ପୂଜା କରି ନରବଳୀ ଦେଇ ସିଦ୍ଧିଲାଭ କରିବା ସେତେବେଳେ କାପାଳିକମାନଙ୍କର ପ୍ରଧାନ ଗାଦି ଥିଲା । ଓଡ଼ିଶାରେ ଭୁବନେଶ୍ୱର ନିକଟସ୍ଥ ହୀରାପୁର ଠାରେ ଆଉ ଏକ ଚଉଷଠୀ ଯୋଗିନୀ ମନ୍ଦିର ଅଛି ।

ଏଠାରେ ଥିବା ସୋମେଶ୍ୱର ମନ୍ଦିରଟି ତ୍ରିରଥ ଓ ଭୁବନେଶ୍ୱରର ପର୍ଶୁରାମ ମନ୍ଦିର ପ୍ରଣାଳୀରେ ନିର୍ମିତ ।

ଏତଦ୍ ବ୍ୟତୀତ ୫୦ରୁ ଉର୍ଦ୍ଧ୍ୱ ଶ୍ରେଷ୍ଠ ଶ୍ରେଷ୍ଠ ଶିବ ମନ୍ଦିର ଏଠାରେ ରହିଛି । ଏହି ଶିବମନ୍ଦିରମାନ ଖ୍ରୀଷ୍ଟାବ୍ଦ ସପ୍ତମ ଅଷ୍ଟମ ଶତାବ୍ଦୀରେ ନିର୍ମିତ ହୋଇଥିଲା ।

ଆଦିବାସୀ ଓ ଅଣଆଦିବାସୀ ଉଭୟ ସମ୍ପ୍ରଦାୟର ଲୋକମାନେ ଏହି ଦେବା-ଦେବୀଙ୍କୁ ମାନନ୍ତି ଓ ଭକ୍ତି କରନ୍ତି ।

ପାଟଣାରେ ପାଟଣେଶ୍ୱରୀ ଓ ସମ୍ବଲପୁରରେ ସମ୍ବଲେଶ୍ୱରୀ ବା ସମଲାଇ ଚୌହାଣ ବଂଶର ଇଷ୍ଟଦେବୀ ରୂପେ ସ୍ୱୀକୃତ ।

ସମ୍ବଲପୁର ଜିଲ୍ଲାର ସବଂଶ ସମଲାଇ ଦେବୀଙ୍କ ସେବା ପୂଜାରେ ଆଦିମ ଅଧିବାସୀ ଶ୍ରେଣୀର ଲୋକ ନିଯୁକ୍ତ ରହି ଅଛନ୍ତି । ସାଧାରଣତଃ ସହରମାନେ ଅଧିକାଂଶ ଦେବୀ ମନ୍ଦିରର ପୂଜକ ।

ପୂର୍ବେ ଏହି ସହର ବା ଶବର ଶ୍ରେଣୀର ଲୋକମାନେ ନୈଷ୍ଠିକ ହିନ୍ଦୁ ବ୍ରାହ୍ମଣଙ୍କ ଦ୍ୱାରା ଅସ୍ପୃଶ୍ୟ ବିବେଚିତ ହେଉଥିଲେ । କିନ୍ତୁ ଏବେ ସେହି ବିଚାର ଦୂରୀଭୂତ ହୋଇଛି ।

କଥିତ ଅଛି, ବିଧର୍ମୀ କଳାପାହାଡ଼ର ଦର୍ପ ଚୂର୍ଣ୍ଣ କରିବାକୁ ସମଲେଇ ଦେବୀ ନିଜେ ପ୍ରତ୍ୟକ୍ଷ ସଂଗ୍ରାମ କରିଥିଲେ । ସେ କଳାପାହାଡ଼ର ସୈନ୍ୟ ସାମନ୍ତମାନଙ୍କୁ ହଇଜା ଓ ବସନ୍ତ ରୋଗରେ ଆକ୍ରାନ୍ତ କରି ଦେଇଥିଲେ । ଏବେ ସମ୍ବଲେଶ୍ୱରୀ ମନ୍ଦିରରେ 'କଳାପାହାଡ଼'ର ଢକ୍କା ବାଦ୍ୟ ସଂରକ୍ଷିତ ବୋଲି ଜନଶ୍ରୁତିରୁ ଜଣାପଡ଼େ ।



# ତୃତୀୟ ଭାଗ

## —ଆଦିବାସୀ ଜୀବନ—

: ସସ୍କୃତି ଓ ପରଂପରା :

( ଆଲୋକ ଚିତ୍ରମାଳା )



: କୋରାପୁଟ ଓ କଳାହାଣ୍ଡିର ଗଦବା ନୃତ୍ୟ :



: କୋରାପୁଟର ପରଜା ନୃତ୍ୟ :



: କଳାହାଣ୍ଡି ଓ ବଲଙ୍ଗିରର ଚଇଢପଙ୍କ ନୃତ୍ୟ :



: ଢୋଲପୁର ଓ କେଉଁଝରର ଜୁଆଙ୍ଗ ନୃତ୍ୟ :



: ଆଦିବାସୀ ତରୁଣୀ ଦ୍ୱୟ :



: ପଶ୍ଚିମ ଓଡ଼ିଶାର ଦଣ୍ଡନୃତ୍ୟ :



: ନୃତ୍ୟରତା ଆଦିବାସୀ ରମଣୀ :



: ଗଂଜାମର ଚଢେୟା ନୃତ୍ୟ :



: ଗଂଜାମର ରଣପାନୃତ୍ୟ :



: ମାନ୍ୟବର ଶ୍ରୀଯୁକ୍ତ ବ. ଡ. ଜତ୍ତିଙ୍କ ସହ କଲାହାଣ୍ଡିର ପ୍ରଖ୍ୟାତ ଘୁମୁରା ଦଳ :



: ଗୋଦାବରୀଶ ସାହିତ୍ୟ ସଂସଦ ଭବନରେ ସାହିତ୍ୟଭଗୀରଥି ନେପାଳଙ୍କୁ ଭୁବନେଶ୍ୱରର ବିଭିନ୍ନ ସାହିତ୍ୟ ସଂସ୍ଥା ତରଫରୁ ସମ୍ବର୍ଦ୍ଧନା :